ଲେଖକ:—

ଶ୍ରୀ ଗଣେଶ ପ୍ରସାଦ ପରିଜା

ପ୍ରକାଶିକା:—

ଶ୍ରୀମତୀ କ୍ଷିରୋଦା ପରିଜା

ଚେଲୁଳ ପଦା

କଟକ

ପ୍ରଚ୍ଛଦପଟ:—

ଶ୍ରୀ ଜଗଦୀଶ କାନୁନ୍‌ଗୋ

ପ୍ରଥମ ପ୍ରକାଶ

ଶାରଳା ଶ୍ରଦ୍ଧୋତ୍ସବ

ତା ୧। ୨। ୮୨

ମୁଦ୍ରଣ:-

ଶ୍ରୀମତୀ ସୁଷମା ମହାନ୍ତି

ହିନ୍ଦୁସ୍ଥାନ ପ୍ରେସ

ଶିଶୁପୁର

ଭୁବନେଶ୍ୱର-୩

ମୂଲ୍ୟ— ସାତ ଟଙ୍କା ମାତ୍ର

# ମୁଖବନ୍ଧ

ବନ୍ଧୁ ଶ୍ରୀ ଗଣେଶ ପ୍ରସାଦ ପରିଜା ତାଙ୍କର "ଶାରଳା କାହାଣୀ" ପୁସ୍ତକର ମୁଖବନ୍ଧ ଲେଖିବା ପାଇଁ ମୋତେ ଅନୁରୋଧ କଲାବେଳେ ମୁଁ ବିସ୍ମିତ ହୋଇଥିଲି । ବନ୍ଧୁତା ଓ ଶ୍ରଦ୍ଧାର ଆତିଶଯ୍ୟ ହେତୁ ସେ ଏହା ଚାହିଁଛନ୍ତି ବୋଲି ମୁଁ ଅନୁଭବ କରିଥିଲି ଓ ଏବେ ବି ସେଇଆ ଭାବୁଛି । ନହେଲେ "ଯୁଗେ ଯୁଗେ ଜଗନ୍ନାଥ" "ମହାପ୍ରଭୁ ଜଗନ୍ନାଥ" "ଯୁଗେ ଯୁଗେ ବୌଦ୍ଧ ଗଳ୍ପ" "ଓଡ଼ିଶାର ଶକ୍ତି ସାଧନା", "ଯା ଦେବୀ ଶକ୍ତି ରୂପେଣ" "ଶାରଳା ଦାସଙ୍କ ଗଳ୍ପ" ପ୍ରଭୃତି ବହୁ ଉପାଦେୟ ଓ ଲୋକପ୍ରିୟ ପୁସ୍ତକର ଲେଖକଙ୍କର ଏଇ ବହିର ମୁଖବନ୍ଧ ଲେଖିବା, କେବଳ ଲୌକିକତା ଛଡ଼ା ଅନ୍ୟ କୌଣସି ଦୃଷ୍ଟିରୁ ଆବଶ୍ୟକ ଅଛି ବୋଲି ମନେ ହୁଏ ନାହିଁ ।

ଶ୍ରୀ ପରିଜା ତାଙ୍କର ଅନ୍ୟ କେତୋଟି ପୁସ୍ତକର "ଜଣକଥା"ରେ ଏକାଧିକ ବାର ସୂଚନା ଦେଇଛନ୍ତି ଯେ ତାଙ୍କର ବିଭିନ୍ନ କୃତିର ଅନ୍ତର୍ନିହିତ ପ୍ରେରଣା, ସେ ସେଇ କଳିଆର ଭୁଜ ମହାବାହୁ ଜଗନ୍ନାଥଙ୍କଠୁ ପାଇଛନ୍ତି । ତାଙ୍କର ଆଦେଶ, ଓ ତାଙ୍କୁଇ ସମର୍ପଣ, ସେ ନିମିତ୍ତ ମାତ୍ର । ବାଣୀ ଆରାଧନାର ଏଇ ପରମ୍ପରା ଆମ ସାରସ୍ୱତ-ପୀଠରେ ଏକ ପ୍ରାଚୀନ ମହତ ପରମ୍ପରା । ବନ୍ଧୁ ପରିଜା ସେଇ ପରମ୍ପରାର ବାହକ । ବାହକ ନୁହେଁ, ସେ ଉକ୍ତ ପରମ୍ପରାର ମାଧ୍ୟମ । ତାଙ୍କର ଏଇ "ଶାରଳା କାହାଣୀ" ପୁସ୍ତକ ସେଇ ପରମ୍ପରାକୁ ଆଉ କିଛି ବାଟ ଆଗେଇ ନେଇଛି ।

ଶାରଳା ସାହିତ୍ୟ ଏକ ବିରାଟ ଗନ୍ତାଘର । ବାଉନ ଭଣ୍ଡାର । ଏଇ ଭଣ୍ଡାରରେ ବହୁ ବିଭବ;ହୀରା, ନୀଳା, ମଣି, ମାଣିକ ସାଇତା ହୋଇଛି । 'ହୀରା'ର ସ୍ୱକୀୟ ବିଭବ ହେଉଛି ଏହା ନିଜର ଆଲୋକରେ ଝଟକୁ ଥାଏ । ଆଲୋକ ଥରେ ଏହା ମଧ୍ୟରେ ପ୍ରବେଶ କଲେ ଆଉ ବାହାରକୁ ଯାଇ ପାରେ ନାହିଁ । ବିଜ୍ଞାନର ଭାଷାରେ ଏହାକୁ "ପୂର୍ଣ୍ଣ ଅଭ୍ୟନ୍ତରୀଣ ପ୍ରତିଫଳନ" (Total internal reflection) କହନ୍ତି । ଶାରଳା ସାହିତ୍ୟରେ ଠିକ୍ ଏଇ ଗୋଟିଏ ଗୁଣ-ଏହା ତତ୍କାଳୀନ ତଥା ସମକାଳୀନ ସଂସ୍କୃତିର ଏକ ପୂର୍ଣ୍ଣ ଅଭ୍ୟନ୍ତରୀଣ ପ୍ରତିଫଳନ । ସେଥିପାଇଁ ଯାହା ଶାରଳା ମହାଭାରତରେ ନାହିଁ ତାହା ଭାରତବର୍ଷରେ ନାହିଁ "ଯାହା ନାହିଁ ଭାରତେ ତାହା ନାହିଁ ଭାରତେ" । ଧର୍ମ, ସଂସ୍କୃତି, ରାଜନୀତି, ଅର୍ଥନୀତି, ଆଚାର, ବ୍ୟବହାର, ରୀତି, ନୀତି, ଶୀଳ, ଚଳଣି, ପୂଜା, ପାର୍ବଣ, ଧାରଣା, ବିଶ୍ୱାସ, ଉତ୍ସବ, ଅନୁଷ୍ଠାନ, ସାମାଜିକ ଅନୁଷ୍ଠାନିକ ପାରମ୍ପରିକ ନିଷେଧ, ବିଧାନ, ବିଧି, ଇତ୍ୟାଦି ସବୁ ବିଷୟରେ ଶାରଳା ସାହିତ୍ୟ ଏକ ପୂର୍ଣ୍ଣାଙ୍ଗ ଅଭ୍ୟନ୍ତରୀଣ ପ୍ରତିଫଳନ । ଶାରଳା ସାହିତ୍ୟର ଏଇ ଲୋକଭୋଗ୍ୟ

ଲୋକବୋଧ, ଗନ୍ଧେଶ୍ୱରଙ୍କ ସମ୍ବାଦ, ସାର୍ବଭୌମ, ଲୋକଧର୍ମୀତା, ଏହାର ପ୍ରଧାନ ଉପଜୀବ୍ୟ । ଉତ୍କଳୀୟ ସଂସ୍କୃତିର ଏକାତ୍ମବୋଧ, ଆବେଗ, ଆଧାର, ପ୍ରବଣତା ଶାରଳା ସାହିତ୍ୟ ମାଧ୍ୟମରେ ହିଁ ପୂର୍ଣ୍ଣାଙ୍ଗ ରୂପ ନେଇଛି । ଏହା ଆମ ସଂସ୍କୃତି ଓ ନିତ୍ୟ ଜୀବନର ସଂସ୍କୃତିର ଏକ ବିଶ୍ୱସ୍ତ ପ୍ରତିଫଳନ । ତା ସହ ଆମ ଆଦର୍ଶ, ପରମ୍ପରା ଓ ମୌଳିକ ପ୍ରତିଭାର ମଧ୍ୟ ଖଣକାରର କାହାଣୀ, କୁନ୍ତୀଙ୍କର ଭକ୍ତି ଇତ୍ୟାଦି ମଧ୍ୟରେ ଏଇ ବୈଲକ୍ଷଣ ବୈଶିଷ୍ଟ୍ୟର ସ୍ୱାକ୍ଷର ପରିସ୍ଫୁଟ ଆଜି ପ୍ରାଞ୍ଜଳ ।

ଶ୍ରୀ ପଣ୍ଡାଙ୍କ ପୁସ୍ତକ ଦଶ ଗୋଟି ଗଳ୍ପର ଏକ ଗୁଚ୍ଛ । ପ୍ରତ୍ୟେକ ଗଳ୍ପ ଏକ ଉପାଖ୍ୟାନ ଉପରେ ଆଧାରିତ । ଐତିହାସିକ ସତ୍ୟତା ବାଦ ଦେଲେ କୌଣସି ଏକ କିମ୍ବଦନ୍ତୀ, ବା ଉପାଖ୍ୟାନର ଯେଉଁ ଉପାଦାନ ଜନମାନସ ସତ୍ତାରେ ଉଜ୍ଜୀବିତ ହୁଏ, ତାକୁ ପ୍ରସ୍ଫୁଟିତ କରେ, ଉଦ୍‌ବୁଦ୍ଧ କରେ ଏବଂ କାଳର ଅଜଣା ପ୍ରବାହ ମଧ୍ୟରେ ତାର ଭାବସତ୍ତାରେ ନୂତନ ବ୍ୟଞ୍ଜନା ଆଣି ତାକୁ କରେ ରସାଣିତ, କାଳଜୟୀ, ସେହି ଉପାଦାନ ଗୁଡ଼ିକୁ ଶ୍ରୀ ପଣ୍ଡା କେବଳ ସାହିତ୍ୟିକ ପଣ୍ଡିତ ନୁହେଁ, ବିଚକ୍ଷଣ ଦୂରଦର୍ଶିତା ସହ ବାଛିବାରେ ସକ୍ଷମ ହୋଇଛନ୍ତି । ଏହା ଯେପରି ଚିରନ୍ତନ ଲୋକୋତ୍ତର ମାନସ ସତ୍ତାର ଅବଚେତନର ରୂପାୟନ ଏବଂ ସମାଜର ଦୃଷ୍ଟିଭଙ୍ଗୀ ସହ ସାମୁହିକ ଅବଚେତନ ମନର ଅନ୍ତଯୋଜନା ନିଦାନରୂପୀ ଆତ୍ମପ୍ରକାଶ ।

କଳିକଗଲ, ଖଲ୍ୟକାର, ବେଣୀବନ୍ଧନ, ମହାମାୟା, କେତୁକା, ଗୋପାଳୁଣୀ ମୃଧଷ୍ଠୀର ହରଣ ଇତ୍ୟାଦି ପ୍ରତ୍ୟେକ ଗଳ୍ପ ଗୋଟିଏ ଗୋଟିଏ ହୀରା-ଖଣ୍ଡ ଶ୍ରୀ ପଣ୍ଡା ଶାରଳା କାହାଣୀର ଏଇ ଗଳ୍ପ ଗୁଡ଼ିକ ମାଧ୍ୟମରେ ସାମୁହିକ ଅଚେତନର ସୂକ୍ଷ୍ମ ଅନୁ-ବୋଧ ଓ ଚେତନଶୀଳତା ଆହରଣ କରିବାରେ ପାରଦର୍ଶୀତା ଓ ବ୍ୟୁତ୍ପତ୍ତି ଦର୍ଶାଇ ପାରିଛନ୍ତି, ଖୁବ୍ ସଫଳ ଭାବରେ ।

ଆଗରୁ ଉଲ୍ଲେଖ କରିଛି ଏହା ମୁଖବନ୍ଧ ନୁହେଁ । ଗୋଟିଏ ତାଳପତ୍ର ଚିତ୍ର ବା ପଟ୍ଟଚିତ୍ର ବା କୌଣସି ଏକ କଳା-କୃତିକୁ ବନ୍ଧେଇ ରଖିଲେ କଳାକୃତିର ମୂଲ୍ୟ ବଢ଼ି-ଯାଏ ନାହିଁ । ଅବଦାନ ଦୃଷ୍ଟିରେ ବନ୍ଧାଇର ଉପଯୋଗିତା ନମୋଜିତ ନୁହେଁ । ଏଇ ପୁସ୍ତକ ସମ୍ବନ୍ଧରେ ମୋର ମତାମତ ସେଇ ଦୃଷ୍ଟିରୁ ସୁଧୀ ପାଠକବୃନ୍ଦ ଗ୍ରହଣ କରିବେ ବୋଲି ଆଶାକରେ । ମୁଁ ନିଃସନ୍ଦେହ ଯେ ଶ୍ରୀ ପଣ୍ଡାଙ୍କର ଆଉ ବହୁ ପୁସ୍ତକ ଭଳି ଏ ପୁସ୍ତକ ନିଶ୍ଚିତ ଭାବରେ ସର୍ବଜନ ଆଦୃତ ହେବ ।

**ରାଇ ଚରଣ ଦାସ** ୩୦ । ୧ । ୮୨
ସମ୍ପାଦକ, ଓଡ଼ିଶା ସାହିତ୍ୟ ଏକାଡ଼େମୀ



| ବିଷୟ | ପୃଷ୍ଠା |
|---|---|
| କଳି କରାଳ | ୧ |
| ଶତଶୃଙ୍ଗ | ୧୦ |
| ବେଣୀବନ୍ଧନ | ୨୧ |
| ଗୋପାଳୁଣୀ | ୨୯ |
| ମହାମାୟା କେଭୁଜା | ୪୧ |
| ଝଙ୍କାର | ୫୭ |
| ସୁବର୍ଣ୍ଣ ହରିଣ | ୭୫ |
| ଚିନ୍ମୟୀ | ୯୪ |
| ମାୟାବନ୍ଧ | ୧୦୫ |
| ବଜପୁଙ୍କି | ୧୨୧ |

# ନାନ୍ଦୀପାଠ

ଶାରଳା ସାହିତ୍ୟ ଅଲୌକିକ କାହାଣୀର ଗନ୍ତାଘର । ବ୍ୟାପକଭାବେ ଶାରଳା ଦାସ ସମଗ୍ର ଓଡ଼ିଶାର ଲୋକଚରିତ୍ର ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଅଞ୍ଚଳର ଦେବ-ଦେବୀ ଓ ସେ ସମ୍ବନ୍ଧୀୟ କିମ୍ବଦନ୍ତୀଗୁଡ଼ିକୁ ନିଜ ବର୍ଣ୍ଣନା ଶୈଳୀରେ ଏପରି ଭାବେ ଯୋଡ଼ି ଦେଇଛନ୍ତି ଯେ, ତାହା ପାଠକମାନଙ୍କ ପକ୍ଷରେ ଅତ୍ୟନ୍ତ କୌତୂହଳୋଦ୍ଦୀପକ ହୋଇଥାଏ । ତା'ବ୍ୟତୀତ ମୂଳ ପୌରାଣିକ ବିଷୟବସ୍ତୁକୁ ଚିତ୍ରଣ କରିବାକୁ ଯାଇ ସେ ଏପରି ରଙ୍ଗ ଦେଇଛନ୍ତି ଯେ ତାହା କବିଙ୍କର ମୌଳିକ ରଚନା ଭଳି ପ୍ରତିଭାତ ହୁଏ । ମହାଭାରତ, ବିଲଙ୍କାରାମାୟଣ, ଚଣ୍ଡୀପୁରାଣ, ସପ୍ତକାଣ୍ଡରାମାୟଣ ଓ ବିଚିତ୍ରରାମାୟଣରେ ଶାରଳା ଦାସ ଘଟଣାବଳୀକୁ ଏପରି ଭାବରେ ଚିତ୍ରଣ କରିଛନ୍ତି ଯେ, ତାହା ଗୋଟିଏ ଗୋଟିଏ ଆମୋଦପ୍ରଦ କାହାଣୀରେ ପରିଣତ ହୋଇଛି । ବିଶେଷତଃ ମହାଭାରତ ଓ ଚଣ୍ଡୀପୁରାଣରେ ବର୍ଣ୍ଣିତ କାହାଣୀରେ ଶାରଳା ଦାସଙ୍କ ମହତ୍ତ୍ୱ, ପ୍ରତିଭା, କଳ୍ପନାଶକ୍ତି ପ୍ରକାଶ କରିବାର ଯଥେଷ୍ଟ ଉପାଦାନ ଯୋଗାଇ ଥାଏ । ଶାରଳା ରଚନାର କାହାଣୀ ଓଡ଼ିଆ ସାହିତ୍ୟର ପ୍ରାରମ୍ଭିକ ରଚନା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଦୀର୍ଘଦିନ ଧରି ମା' ଶାରଳାଙ୍କ କୃପାରୁ ଶାରଳା ସାହିତ୍ୟର ଅଧ୍ୟୟନ କରି ସେଥିରୁ କେତୋଟି ଲୋକରଞ୍ଜକ କାହାଣୀକୁ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକୁ ଆଧୁନିକ ଢଙ୍ଗରେ ପରିବେଷଣ କରି ମୁଁ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରିଛି । ଓଡ଼ିଶାର ବିଦଗ୍ଧ ପାଠକ ସମାଜ କାହାଣୀ ଗୁଡ଼ିକୁ ସ୍ୱାଗତ କରିଛନ୍ତି । ସେଥିମଧ୍ୟରୁ କେତୋଟିର ସଂକଳନ 'ଶାରଳା ଦାସଙ୍କ ଗଳ୍ପ' ଶୀର୍ଷକ ପୁସ୍ତକରେ ପ୍ରକାଶ ପାଇଛି । ସେହି ପୁସ୍ତକଟିକୁ ମଧ୍ୟ ପାଠକ ସମାଜ ସାଦରରେ ଗ୍ରହଣ କରିଛି । ଓଡ଼ିଶାର ବିଜ୍ଞ ପାଠକପାଠିକାଙ୍କ ସାଦର ସ୍ୱୀକୃତି ପାଇ 'ଶାରଳା କାହାଣୀ' ଶୀର୍ଷକ ଦ୍ୱିତୀୟ ପୁସ୍ତକଟି ପ୍ରକାଶ କରିବାକୁ ପ୍ରୟାସୀ ହୋଇଛି । ଏହି ସଂକଳନରେ ଯେଉଁ ଦଶଟି ଗଳ୍ପ ସନ୍ନି-ବେଶିତ ହୋଇଛି ସେଗୁଡ଼ିକ ମୂଳତଃ ମହାଭାରତ ଓ ଚଣ୍ଡୀପୁରାଣ ଉପରେ ଆଧାରିତ । ସେହି କାହାଣୀ ଗୁଡ଼ିକ ମଧ୍ୟରୁ 'ତେଜସ୍ୱିନୀ' 'ତପସ୍ୱୀ' 'ଗୋପାଳୁଣୀ' ଶୀର୍ଷକ ଏହି ତିନୋଟି ଗପ 'ପୌରୁଷ'ର ବିଭିନ୍ନ ସଂଖ୍ୟାରେ ପ୍ରକାଶ ପାଇଛି । ଅବଶିଷ୍ଟ ସାତଟି କାହାଣୀ ଲେଖି ମୁଁ ମୋର ବନ୍ଧୁମାନଙ୍କୁ ଦେଖାଇଲି । ସେମାନେ ଗଳ୍ପ ଗୁଡ଼ିକର

ଗୁରୁତ୍ୱ ଉପଲବ୍ଧି କରି ପୁସ୍ତକ ଆକାରରେ ପ୍ରକାଶ କରିବା ପାଇଁ ମୋତେ ପ୍ରେରଣା ଦେଲେ । ତେଣୁ ଆଜି 'ଶାରଳା କାହାଣୀ' ପ୍ରକାଶ କରିବାରେ ମୁଁ ଉତ୍ସାହୀ ହୋଇ-ପାରିଛି ।

ବହିଟିକୁ ଶାରଳା ଦାସଙ୍କ ଶ୍ରାଦ୍ଧୋତ୍ସବ ଦିନ ଉଦ୍‌ଘାଟନ କରିବାର ମୋହ ମୁଁ ଏଡ଼ାଇ ପାରିଲି ନାହିଁ । ତେଣୁ ପୁସ୍ତକଟିକୁ ଛାପିବା ପାଇଁ ବିଭିନ୍ନ ପ୍ରେସର ଦ୍ୱାରସ୍ଥ ହେଲି । ପରିଶେଷରେ ଭୁବନେଶ୍ୱରର ହିନ୍ଦୁସ୍ଥାନ ପ୍ରେସ୍ ପୁସ୍ତକଟିକୁ ଯଥାଶୀଘ୍ର ସମ୍ଭବ ଶାରଳା ଶ୍ରାଦ୍ଧୋତ୍ସବ ପୂର୍ବରୁ ଛାପିଦେବାର ପ୍ରତିଶ୍ରୁତି ଦେଲେ । ଶ୍ରାଦ୍ଧୋତ୍ସବ କାର୍ଯ୍ୟରେ ମୁଁ ଅତ୍ୟନ୍ତ ବ୍ୟସ୍ତ ରହିଥିବାରୁ ମୁଦ୍ରଣଗତ ତ୍ରୁଟି ସଂଶୋଧନ ପାଇଁ ସୁବିଧା ପାଇଲି ନାହିଁ । ତେଣୁ ପୁସ୍ତକରେ କେତେକ ତ୍ରୁଟି ରହିଯାଇଛି । ବିଶେଷତଃ ଓଡ଼ିଶାର ମୁଦ୍ରଣ କ୍ଷେତ୍ରରେ ଖଣ୍ଡିଏ ଭ୍ରମ ପ୍ରମାଦ ଶୂନ୍ୟ ପୁସ୍ତକ ଛାପିବା ନିତାନ୍ତ ଦୁରୂହ ବ୍ୟାପାର ।

ପୁସ୍ତକର ମୁଖବନ୍ଧ ଓଡ଼ିଶା ସାହିତ୍ୟ ଏକାଡେମୀର ସୁଯୋଗ୍ୟ ସମ୍ପାଦକ ଶ୍ରୀଯୁକ୍ତ ରାଇ ଚରଣ ଦାସ ଲେଖିଥିବାରୁ ତାଙ୍କ ନିକଟରେ ମୁଁ କୃତଜ୍ଞ । ମୋର ବନ୍ଧୁ ଶ୍ରୀ ନୀଳମଣି ମିଶ୍ର, ଡକ୍ଟର ଭଗବାନ ପଣ୍ଡା, ଶ୍ରୀ ବଂଶୀଧର ଷଡ଼ଙ୍ଗୀ ମୋତେ ପ୍ରସ୍ତୁତ ପୁସ୍ତକ ସମ୍ପାଦନାରେ ଅକୁଣ୍ଠ ସାହାଯ୍ୟ କରିଥିବାରୁ ମୁଁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

'ଶାରଳା କାହାଣୀ'ଟି ବର୍ତ୍ତମାନ ଓଡ଼ିଶାର ଅଗଣିତ ପାଠକପାଠିକାଙ୍କ ହସ୍ତରେ ଅର୍ପଣ କରୁଛି । ପୁସ୍ତକରେ ଥିବା ବିଭିନ୍ନ ମୁଦ୍ରଣଗତ ପ୍ରମାଦ ପ୍ରତି ଦୃଷ୍ଟି ନ ଦେଇ ସେମାନେ ଆଗ୍ରହର ସହିତ ଶାରଳା ଦାସଙ୍କ କାହାଣୀଗୁଡ଼ିକୁ' ପାଠକଲେ ମୋର ଶ୍ରମ ସାର୍ଥକ ହେବ ।

ତେନ୍ତୁଳପଦା, କଟକ
ମାଘସପ୍ତମୀ
୧ । ୨ । ୧୯୮୨

ବିନୀତ

ଗଣେଶ ପ୍ରସାଦ ପରିଜା

# କଳିକରାଳ

ବେଳକୁ ବେଳ ସିଂହଦ୍ୱାରରେ ଲୋକମାନଙ୍କ ଭିଡ଼ ବଢିବାକୁ ଲାଗିଥାଏ । ଦୁଇଜଣଙ୍କ ପାଟି ଭୁଣ୍ଡ ସହିତ ଦେଖଣାହାରିଙ୍କ ପାଟିଭୁଣ୍ଡରେ ସିଂହଦ୍ୱାର ଫାଟି ପଡ଼ୁଥାଏ । ସେହି ଦୁଇଜଣଙ୍କ ସହିତ ଅନ୍ୟଙ୍କ କଳି ଶୁଣି ଲୋକେ ବି ଧାଇଁ ଆସୁଥାନ୍ତି ଘଟଣାଟି କଣ ବୁଝିବା ପାଇଁ । ଯେ ଆସି ସେଠାରେ ପହଞ୍ଚୁଥାଏ ସେ ଆଉ ଫେରିଯାଇ ନ ଥାଏ । ଶେଷରେ ସେହି ଦୁଇଜଣଙ୍କ କଳିର କ ମୀମାଂସା ହେବ ତାହା ଦେଖିବାକୁ ରହିଯାନ୍ତି ଆସୁଥିବା ଲୋକ । ସମସ୍ତେ ମଧ୍ୟ ଆଶ୍ଚର୍ଯ୍ୟ (ଆଶ୍ଚର୍ଯ୍ୟ) ସେମାନଙ୍କ କଳିରେ । ସତେ ଏଇ ଗୋଟିଏ ଛୋଟିଆ ଘଟଣାକୁ ନେଇ ଦୁହେଁ ଆଜି ରାଜଧାଣ୍ଡରେ ଛିଡ଼ା ହେଲେଣି ।

କେତେକ ଲୋକ ଏହି ଘଟଣାକୁ ଛୋଟ ବୋଲି ଧାରଣା କରନ୍ତି ନାହିଁ । ସେମାନେ କହନ୍ତି ଏହି ଘଟଣା ଯଦି ଛୋଟ ହେବ, ତେବେ ବଡ ବୋଲି କାହାକୁ ଧରିବ ?

କଜିଆ ଦୁଇଜଣଙ୍କ ମଧ୍ୟରେ । ଜଣେ କୃଷାଣ ଓ ଅନ୍ୟ ଜଣକ କରଷାଣ । କୃଷାଣ ଜଣକ ବ୍ରାହ୍ମଣ । ତାହାର ଜମିରେ ତଡ଼ପା ବୋଲି ଜଣେ କରଷାଣକୁ ଜମି କର୍ଷଣ କରିବାକୁ ନିଯୁକ୍ତ କଲେ । ସେ ପ୍ରଥମେ ହଳ ଲଙ୍ଗଳରେ ଜମି କର୍ଷଣ କଲାପରେ, କୃଷାଣ ପଣ୍ଡାଏ ନିଜେ ତାକୁ ଗୋଟିଏ କୋଦାଳ ଦେଇ ସେହି ଜମିରେ ଥିବା ଖାଲ ଢିକିର ସମତୁଲ କରିବାକୁ କହିଲେ । କରଷାଣ ତଡ଼ପା କୋଦାଳଟି ଧରି ଖାଲଢିପକୁ ସମାନ କରି କରି କ୍ଷେତର ଗୋଟାଏ ଗୋଟାଏ କଣରେ ଥିବା ବୁଦାକୁ ତାଡ଼ିଲା ବେଳେ କୋଦାଳ ଗୋଟାଏ ପଥରରେ ବାଜିଲା । ସେ ସାବଧାନତାର ସହ ସେହି ପଥରଟିକୁ ତାଡ଼ି ଦେଲାପରେ ପଥର ତଳେ ଏକ ସୁନାର ଝଙ୍ଗ ରହିଥିବାର ସେ ଦେଖିଲା । ଜିନିଷଟି ପ୍ରକୃତ କଣ ତାହା ସେ ହାତମାରି ଦେଖି ଜାଣି-ପାରିଲା ଏହା ସୁନାର ଝଙ୍ଗ । ଜମିର ମାଲିକ ପଣ୍ଡା ସେହିଠାରେ ଉପସ୍ଥିତ

ରହି ତାହାର ସବୁ କାମ ଦେଖୁଥାନ୍ତି । ମାଟି ଭିତରୁ ସୁନାର ଝିଙ୍କଟିକୁ ବାହାର କରି ତତ୍ପର ତାର ମାଲିକଙ୍କ ସମ୍ମୁଖରେ ଥୋଇ ନିବେଦନ କଲ ସେହି ଝିଙ୍କଟି ଗ୍ରହଣ କରିବାକୁ । ମାତ୍ର ଜମିର ମାଲିକ ସୁରେଶର ପଣ୍ଡା ଏ ନାସ୍ତି-କଲେ ସେ ଝିଙ୍କକୁ ନେବାପାଇଁ । ସେ କହିଲେ ତାହା କିପରି ହେବ । ଜମିରେ ଫସଲ ପାଇଁ ତୁ ଚାଷ କରୁଛୁ । ତୋର ପରିଶ୍ରମରୁ ଏ ଦ୍ରବ୍ୟଟି ବାହାରିଲା । ଜମିରେ ଚାଷହୋଇ ଯେଉଁ ଶସ୍ୟ ଉତ୍ପନ୍ନ ହେବ ତାହାର ଅଧି-କାରୀ ମୁଁ ହେବି । ମାତ୍ର ଜମି ଭିତରୁ ଯେଉଁ ଦ୍ରବ୍ୟ ବାହାରିବ ତାହାର ଅଧିକାରୀ ମୁଁ ନୁହେଁ । ତୁ ପରିଶ୍ରମ କରିଥିବାରୁ ତାହା ତୋର ପ୍ରାପ୍ୟ । ତାହା ତୁ ନ ନେଇ ମୁଁ ନେଲେ ପାପ ହେବ ।

ଜମିରେ କାମ କରୁଥିବା ପଣ୍ଡାଙ୍କ ମୂଲିଆ କିନ୍ତୁ ପଣ୍ଡାଙ୍କ କଥାରେ ରାଜି ନୁହେଁ । ସେ କହେ ଏହା କିପରି ହେବ । ମୁଁ ଆପଣଙ୍କର ହଳିଆ ମାତର । ମୋ ପରିଶ୍ରମ ପାଇଁ ଆପଣ ଲୁଗା ବର୍ତ୍ତନ ଯାହା ଦେବାର ଦେଉ-ଛନ୍ତି । ଏ ଦ୍ରବ୍ୟଟି ଆପଣଙ୍କ ଭୂମିରୁ ବାହାରିଛି । ଭୂମି ଯେତେବେଳେ ଆପଣଙ୍କର ତା ମଧ୍ୟରୁ ଯାହା ଉତ୍ପନ୍ନ ହେବ, ତାହା ଆପଣଙ୍କର । ସେଥିରେ ହଳିଆର କୌଣସି ଦାବୀ ନାହିଁ । ତେଣୁ ତାହା କେବେ ମୁଁ ଗ୍ରହଣ କରି ପାରିବ ନାହିଁ ।

ସତେ ଏହା ବଡ଼ ଆଶ୍ଚର୍ଯ୍ୟର କଥା । ଜମିରୁ ଯଦି ଆଜ ଗୋଟାଏ ସାପ ବାହାରିଥାନ୍ତା, ତେବେ ତାହା କଣ ପଣ୍ଡାଙ୍କର ପ୍ରାପ୍ୟ ହୋଇଥାନ୍ତା । ସେ ଯଦି କାହାକୁ ଦଂଶିଥାନ୍ତା । ତେବେ ତେବେ ସେଥିପାଇଁ କି ପଣ୍ଡା ଦାୟୀ ହୋଇଥାନ୍ତେ ? ଆଉ ମୂଲିଆ ଶାସ୍ତି ପାଇଥାନ୍ତା ।

ଦଳେ କହି ଉଠିଲେ, କାହିଁକି ନୁହେଁ ? ପଣ୍ଡାତ ତାକୁ ନିଯୁକ୍ତ କରି-ଥିଲେ ସେହି କାମରେ । ଅମୃତ ବାହାରିଲା କି ବିଷ ବାହାରିଲା, ସେଥିରେ ବିଚରା ମୂଲିଆର ଯାଏ ଆସେ କେତେ ।

ଧର୍ମରାଜଙ୍କ ସିଂହଦ୍ୱାରରେ ନ୍ୟାୟର ପ୍ରାର୍ଥୀ ଦୁଇଜଣ । ସେହି ଦୁଇ-ଜଣଙ୍କ ସହିତ ଦେଖଣାହାରିମାନେ ମଧ୍ୟ ଉପସ୍ଥିତ ହୋଇଯାଇଥାନ୍ତି ଏ

ମଧ୍ୟରେ । ତେଣୁ ସେ ଦୁଇଜଣଙ୍କ ନ୍ୟାୟ ସହିତ ହଜାର ହଜାର ଦେଶର ଜନତା ମଧ୍ୟ ଏକ ହୋଇଯାଇଥାନ୍ତି ।

ବାହାର ପାଟିତୁଣ୍ଡ ଭିତରକୁ ବେଶ୍ ଶୁଭିଯାଉଥାଏ । ସିଂହଦ୍ୱାରରେ ଦ୍ୱାରରକ୍ଷକ ନଥିଲେ ଲୋକମାନେ ଭିତରକୁ ପଶି ଯାଆନ୍ତେଣି କେତେବେଳୁ । ରକ୍ଷକଙ୍କ କଡ଼ା ପ୍ରହରୀ ଯୋଗୁ ମୂଳ ଅଭିଯୋଗକାରୀଙ୍କ ସହିତ ଅନ୍ୟ ଲୋକ-ମାନେ ବାହାରେ ଛିଡ଼ା ହୋଇଥାନ୍ତି ଯାହା । ଧର୍ମରାଜ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ଥିଲେ । ମାତ୍ର ଯେତେବେଳେ ବେଳକୁ ବେଳ ବାହାରେ ପାଟିତୁଣ୍ଡ ବଢ଼ି-ବାକୁ ଲାଗିଲା, ସେତେବେଳେ ସେ ଆଉ ଭିତରେ ରହି ପାରିଲେ ନାହିଁ । ଭାଇମାନଙ୍କ ସହିତ ବାହାରି ଆସିଲେ ସିଂହଦ୍ୱାରକୁ, ଘଟଣାଟି ବୁଝିବାକୁ ।

ମହାରାଜ ଧର୍ମ ଯୁଧିଷ୍ଠିରଙ୍କୁ ଦେଖି ଚଢ଼ଉପା ଲମ୍ବହୋଇ ତାଙ୍କ ପାଦ-ତଳେ ପଡ଼ିଗଲା । କାନ୍ଧରେ ଉପବୀତ ଲକ୍ଷ୍ୟକରି ମହାରାଜ ହେଲେ ମଧ୍ୟ ଯୁଧିଷ୍ଠିରଦେବ ପ୍ରଣାମ କଲେ ଅଭିଯୋଗ କରିବାକୁ ଆସିଥିବା ପଣ୍ଡାଙ୍କୁ । ଦେଖଣାହାରୀମାନେ ମହାରାଜାଙ୍କୁ ପ୍ରଣାମ କଲେ ।

ହଳିଆ ଚଢ଼ଉପା କିଛି କହିବା ପୂର୍ବରୁ ଭୂମିର ମାଲିକ ପଣ୍ଡାଏ କହିଲେ, ଆପଣ ବିଚାର କରନ୍ତୁ, ଏ ହେଉଛି ମୋର ହଳିଆ । ମୁଁ ଏହାକୁ ମୋ ଜମିରେ ହଳ କରିବାକୁ କାମରେ ଲଗାଇଥିଲି । ତା ପରେ କୋଦାଳରେ ଜମି ହାଣୁ ହାଣୁ ସୁନାର ଝଙ୍ଗଟିଏ ପାଇଲା । ମୁଁ ତାକୁ ଲୁଗା, ବର୍ତ୍ତନ ଦେଇ କାମରେ ଲଗାଏ । ମୋ କାମ କରିବାକୁ ସେ କେବଳ ମୋ ଠାରୁ ବର୍ତ୍ତନ ପାଏ ମାତ୍ର ସେ ଯଦି ମୋ କାମ କରୁଥିଲା ବେଳେ କିଛି କେଉଁଠୁ ଧନ ପାଏ, ତେବେ ତାର ଅଧିକାରୀ ମୁଁ କପରି ହେବି ? ଏ ସୁନା ଝଙ୍ଗଟି ସେ ମାଟି ହାଣୁଥିଲା ବେଳେ ପାଇଲା । ସେ ଯେତେବେଳେ ପାଇଛି ଏ ଦ୍ରବ୍ୟ ତାର ତ ନିଶ୍ଚୟ ହେବ । ମାତ୍ର ସେ ଏ କଥାକୁ ମୋଟେ ସ୍ୱୀକାର କରୁନାହିଁ । ସେ କହେ ତୁମେ ଯେତେବେଳେ କାମରେ ଲଗାଇଛ ଏ ଦ୍ରବ୍ୟ ତୁମର । କିନ୍ତୁ ଏ ଦ୍ରବ୍ୟ ମୋର ନୁହେଁ ମୁଁ କପରି ନେବି । ତେଣୁ ମୋର ଏହି ହଳିଆଟିକୁ ଧରି ଆପଣଙ୍କ ଦରବାରକୁ ଧାଇଁ ଆସିଛି ଉପଯୁକ୍ତ ନ୍ୟାୟ ପାଇଁ ।

ଏ ମୋର ହଳଅା ହୋଇ ଏଭଳି ଛନ୍ଦ ଆଳ ଯେ ତାର ଅରଜିଲା ଧନକୁ ମୋ ଉପରେ ନନ୍ଦ ଦେଉଛି ।

ମହାରାଜ ଯୁଧିଷ୍ଠିର ଅନାଇଲେ ତଡ଼ପା ଆଡ଼କୁ । ତଡ଼ପା ଯୋଡ଼ ହସ୍ତରେ କହିଲା, ମହିମା ଏହା କପରି ହେବ ? ମୁଁ ତାଙ୍କର କାମକରି ଜୀବିକା-ବର୍ତ୍ତନ ପାଏ । ଏ କଳସଟି ତାଙ୍କର ଜମିରୁ ବାହାରିଛି । ତାଙ୍କର ଧନ ନେଇ କାମ କରି ତାଙ୍କର ଜମିରୁ ବାହାରିଥିବା ଦ୍ରବ୍ୟଟି କପରି ଆଜ୍ଞା ମୋର ହେବ, ତାହା ଆପଣ ଠିକଏ ବିଚାର କରି କୁହନ୍ତୁ ! ମୁଁ ଯେତେବେଳେ ମୋ ପରି-ଶ୍ରମର ମୂଲ୍ୟ ପାଉଛି, ସେତେବେଳେ ଏ ଦ୍ରବ୍ୟ ନେବି କପରି ? ଭୂମିରୁ ଯାହା ବାହାରିବ ତାହାତ କୌଣସିକାଳେ ମୋର ନୁହେଁ ।

ଧର୍ମ ଯୁଧିଷ୍ଠିର ଦୁହିଁଙ୍କ କଥା ଶୁଣି ଦୁହିଁଙ୍କୁ ଠିକଏ ଅନାଇ, ମନେ ମନେ ହସିଲେ । ତାପରେ ହସ ହସ ମୁହଁରେ କହିଲେ, ତାଙ୍କର ଜମି ଆଉ ତୁମେ ଯେତେବେଳେ ସେ ଜମିରେ କାମ କରିଛ, ସେତେବେଳେ ଅଧେ ଅଧେ କରି କଳସଟିକୁ ବାଣ୍ଟି ନିଅ ।

ମହିମା ଏହା କପରି ହେବ ? ମୁଁ କର୍ଷଣକାରୀ ମାତ୍ର । ଜମିର ମାଲିକ ମୁଁ ନୁହେଁ । ଜମିର ଉତ୍ପନ୍ନ ଦ୍ରବ୍ୟର ମାଲିକ ମୁଁ ତ କେବେ ହୋଇପାରିବ ନାହିଁ । ଏହି ଅମୂଲ୍ୟ ସମ୍ପଦରୁ ଟିକାଏ ବି ମୁଁ ନେଇପାରିବି ନାହିଁ ।

ଆଜ୍ଞା ଆପଣଙ୍କର ଏ ବିଚାରରେ ମୁଁ ବି ଏକ ମତ ହେଉନାହିଁ । ଜମି ମୋର ସତ, ମାତ୍ର ଏ ତ ଜମିରେ ରୋପଣ ହୋଇଥିବା କୌଣସି ଗଛର ଫଳ ନୁହେଁ । ସେ ପରିଶ୍ରମ କରିଛି । କଳସଟି ମାଟି ତଳୁ ବାହାରିଛି । ସେ ଯେତେବେଳେ ପରିଶ୍ରମ କରି ବାହାର କରିଛି, ସେତେବେଳେ ସେ ଦ୍ରବ୍ୟରୁ ଟିକାଏ ବି ମୋର ପ୍ରାପ୍ୟ ନୁହେଁ ।

ଦୁହେଁ କଳସଟି ନେବାକୁ ଅସମ୍ମତ ଦେଖି ଆଶ୍ଚର୍ଯ୍ୟ (ଆଶ୍ଚର୍ଯ୍ୟ) ହେଲେ ଯୁଧିଷ୍ଠିର । ଏ କି କଥା । ଗୋଟାଏ ସାଧାରଣ କଳସ ନୁହେଁ—ସୁନାର କଳସିଟିଏ । ଜଣେ ଜଣଙ୍କ ଜମିରୁ ବାହାର କରିଛି । ମାତ୍ର କେହି ତାହା ନେବାକୁ ରାଜି ନୁହନ୍ତି ?

ଯୁଧିଷ୍ଠି ଦେବ ଅନାଇଲେ ସହଦେବଙ୍କ ମୁହଁକୁ ।

ସହଦେବ କହିଲେ ଆଜ୍ଞା ମୁଁ ଜାଣିଛି ଏହା କାହିଁକି ହେଉଛି । ସେ ଘଟଣାଟି କହିବା ପୂର୍ବରୁ ଶୂନ୍ୟରୁ କାହାର କଣ୍ଠସ୍ୱର ଭାସି ଆସିଲାପରି ମନେହେଲା । ସେ ଟିକିଏ ଉପରକୁ ଚାହିଁ ହେବାକ୍ଷଣି ଶୂନ୍ୟରୁ କିଏ ଜଣେ କହିଲା, ସହଦେବ ଏହିଠାରୁ ସତ୍ୟ ଯୁଗର ଶେଷ ହେଲା । ଏଣିକି ଯାହା ହେବ ତାହା ଠିକ୍ ସତ୍ୟ ଯୁଗ ବୋଲି କହି ହେବ ନାହିଁ । ତେଣୁ ତୁମେ ଆଉ ଏ ରାଜ୍ୟରେ ନ ରହିବା ଉଚିତ ତୁମେତ ଦେଖିଛ ଶ୍ରୀକୃଷ୍ଣ ତୁମରି ଆଗରେ ତାଙ୍କ ମିଥ୍ୟା ଦେହଟିକୁ ଛାଡ଼ି ଚାଲି ଆସିଲେ । ସେ ଚାଲି ଆସିଲା ପରେ ଆଉ ଅର୍ଜ୍ଜୁନ ମର୍ତ୍ତ୍ୟରେ ରହି ଲାଭ କଣ ? ଯୁଧିଷ୍ଠି ଦେବ ସ୍ୱର୍ଗକୁ ନ ଆସିଲେ ହେବ ନାହିଁ । ସେ ସ୍ୱର୍ଗରେ ନ ଥିଲେ ସ୍ୱର୍ଗ ଶୋଭା ପାଉନାହିଁ । ତୁମେ ସମସ୍ତେ ଚାଲି ଆସିଲା ପରେ ପରୀକ୍ଷା ଦ୍ୱାରା ଉତ୍ତୀର୍ଣ୍ଣ ପରୀକ୍ଷିତ ତାର ବୁଦ୍ଧି କୌଶଳ ପ୍ରୟୋଗ କରି ରାଜ୍ୟ ଚଳାଇବ ।

ସହଦେବ ବ୍ୟସ୍ତ ହୋଇ ପଡ଼ିଲେ ଶୂନ୍ୟବାଣୀ ଶୁଣି । ଏହି ନିର୍ଦ୍ଦେଶ ସେହି ଶୂନ୍ୟ ପୁରୁଷର । ସେ ଜାଣନ୍ତି ଶ୍ରୀକୃଷ୍ଣଙ୍କର ସେହି ମିଥ୍ୟା ଦେହ ବୃକ୍ଷ-ରୂପେ ମହୋଦଧିରେ ଦେଖାଦେବ । ସେହି ବୃକ୍ଷରେ ଚତୁର୍ଦ୍ଧାମୂର୍ତ୍ତି ନିର୍ମିତ ହୋଇ ଉପାସିତ ହେବେ ନୀଳଗିରିରେ । ମୂର୍ତ୍ତିର ପୂଜକ ଅଧମ ଅରଣ୍ୟବାସୀ ଶବର । ଶବରର ଦେବତା ନୀଳଗିରିରେ ଜଗତର ନାଥ ବୋଲାଇ ପୂଜା ପାଇବେ ।

ସହଦେବ ଖୋଲି ଦେଲେ ବନ୍ଧା ହୋଇଥିବା କଳିକୁ ବନ୍ଧନରୁ । କଳି ବନ୍ଧନରୁ ମୁକ୍ତ ହେବା ମାତ୍ରେ ସୂର୍ଯ୍ୟଙ୍କ କିରଣ ମଳିନ ପଡ଼ିଗଲା । ନିର୍ମଳ ଆକାଶ ଟିକିଏ ଅନ୍ଧକାର ହୋଇଗଲା ।

ହଠାତ୍ ସୁରେଶ୍ୱର ପଣ୍ଡା ଆଗକୁ ଯାଇ ପଦନ୍ତ୍ର ଧାଇଁ ଯାଇ ସୁନା-ଝୁଲାଟିକୁ ଟାଣି ନେଇ କହିଲେ; ମୋ ଜମିରୁ ଏ ସୁନାଝୁଲାଟି ଯେତେବେଳେ ବାହାରିଛି, ସେତେବେଳେ ଏହା ହେଉଛି ମୋର ଦ୍ରବ୍ୟ । ଚଢ଼େଇ ମୋର ମୂଲିଆ ; ସେ ମୋ କ୍ଷେତରେ କାମ କରିବାକୁ ମୋ ଠାରୁ ଲୁଗା ବର୍ଣ୍ଣନ ପାଏ ।

ମୋ ନିର୍ଦ୍ଦେଶରେ ସେ ଖେତ ଚାଷ କରୁଥିଲା । ମୋ ଖେତରୁ ବାହାରିଥିବା କଳସରେ ତାର କି ଦାବୀ ଅଛି ?

ମୂଲିଆ ଉତ୍ତର ଦେବା ବେଳକୁ ବୁଢ଼ା ହୋଇଥିଲା ସେହି ପାଖରେ । ତାର ମାଲିକ ପଣ୍ଡାଏ କଳସଟି ନେଇ କରଗତ କରି ଏତେ ଗୁଡାଏ କଥା କହିଯିବାର ଶୁଣି ସଙ୍ଗେ ସଙ୍ଗେ ସେ ଧାଇଁଯାଇ ସେହି ସୁନା ଝଉଁଟିକୁ ତା'ଠାରୁ ଛଡାଇ ଆଣିଲା । କଳସଟିକୁ ଭଲକରି ଧରି କହିଲା, ଏହା କଣ ଆପଣଙ୍କ ଖେତରେ ଫଳିଥିଲା ଯେ ଆପଣଙ୍କର ହେବ ? ମୁଁ ପରିଶ୍ରମ କରି ମାଟି ଭିତରୁ ପଥର ତାଡ଼ି ବାହାର କରିବାରୁ ଆପଣ ଦାବୀ କରୁଛନ୍ତି । ମାତ୍ର ଏହା କେବେ ଆପଣଙ୍କ ପ୍ରାପ୍ୟ ନୁହେଁ । ପୁଣି ଏ ଦ୍ରବ୍ୟଟିକୁ ଖେତରୁ ମୁଣ୍ଡାଇ ଏ ପର୍ଯ୍ୟନ୍ତ ବୋହିଆଣିଛି । ମହିମା କୁହନ୍ତୁ କେଉଁ ନ୍ୟାୟରେ ଆପଣଙ୍କର ଏ ସୁନା ଝଉଁଟି ହେବ ?

ଅବାକ ହୋଇଗଲେ ଧର୍ମ ଯୁଧିଷ୍ଠିର । ଏ କଣ ସେ ଶୁଣୁଛନ୍ତି ? ଏଇ ଟିକକ ପୂର୍ବରୁ କେହି ସେ ସୁନା ଝଉଁଟି ନେବାକୁ ଇଚ୍ଛା ପ୍ରକାଶ ତ ଦୂରର କଥା, ନିଅବୋଲି କହିଲେ ବି ରାଜି ହେଉ ନ ଥିଲେ । ନେବା ବିରୁଦ୍ଧରେ ସୁନ୍ଦର ଯୁକ୍ତିବାଢ଼ି ନିଜକୁ ନିର୍ଲିପ୍ତ ରଖୁଥିଲେ । ମାତ୍ର ଏ କଣ ? ଏହା କିପରି ସମ୍ଭବ ହେଲା ?

ଜ୍ୟେଷ୍ଠ ଯୁଧିଷ୍ଠିର ପୃଚ୍ଛିଲେ କନିଷ୍ଠ ସହଦେବ ଆଡ଼କୁ ।

ସହଦେବ ଅଳ୍ପ ହସି କହିଲେ, ଭାଇ ଏହା ହେଉଛି କଳିର ପ୍ରଭାବ । କଳିଯୁଗରେ ପ୍ରଜାମାନେ ନାନା ପ୍ରକାର ଦୁଃଖ କଷ୍ଟ ସହି କୃଷି କରି ଫଳ ଉପୁଯାଇବେ । ମାତ୍ର ରାଜା ବିଭିନ୍ନ ଉପାୟରେ ତାଙ୍କ ଉପରେ କର ଲଦି ଦୁଇଗୁଣ କରି ଧନ ନେଇଯିବେ । ଏହିଭଳି ଅବିଧି କରିବା ଯୋଗୁ ଇନ୍ଦ୍ର-ଦେବତା ଜଳ ବୃଷ୍ଟି କରିବେ ନାହିଁ । ଫଳରେ ପୃଥ୍ବୀ ଫଳଦାୟିନୀ ହେବେ ନାହିଁ । ଏଣେ ପୁଣି ଯେଉଁ ଦୁଇଗୁଣ କର ରଜା ପ୍ରଜାଙ୍କ ଠାରୁ ନେବେ ତାହା ତାଙ୍କୁ ବି ଅଣ୍ଟିବ ନାହିଁ । ତେଣୁ ରାଜାମାନେ ଦେବସ୍ୱ ବ୍ରହ୍ମସ୍ୱ ଲୁଟି କରିବେ । ରାଜାମାନେ ହେବେ ଶାଗୁଣା ଆଉ ପ୍ରଜାମାନେ ହେବେ ମଡ଼ା ।

ଶାଗୁଣା ଯେଉଁଭଳି ମଡ଼ରୁ ମାଂସ ଟାଣି ଟୁଣି କରି ଖାଏ ସେହିଭଳି ରଜାମାନେ ସବୁମନ୍ତେ ତାଙ୍କୁ ପୀଡା ଦେବେ ।

ଯୁଧିଷ୍ଠିର କହିଲେ କେବଳ ରଜା ଯଦି ଏହିଭଳି ହୋଇ ପ୍ରଜାମାନେ ଠିକ୍ ନୀତି ନିୟମରେ ଚଳନ୍ତି ତେବେ ତାଙ୍କ ପୁଣ୍ୟରୁ ରଜାର ପ୍ରକୃତି ବି ବଦଳି ଯାନ୍ତା ।

ସହଦେବ କହିଲେ, ନା ଭାଇ କେବଳ ରଜା ଯେ ଅନ୍ୟାୟ ମାର୍ଗରେ ଯିବେ ତା ନୁହେଁ, ବ୍ରାହ୍ମଣମାନେ ଚଳହୀନ ହୋଇ ଶୂଦ୍ରଙ୍କୁ ହାତ ପାତିବେ । ନିଜର କର୍ମମାନ ତ୍ୟାଗକରି ସେମାନେ ଅନ୍ୟ ଦ୍ୱାରରେ ଅନ୍ନ ଗଣ୍ଡାଏ ମାଗି ବୁଲିବେ । ଆଉର ଗୁଡ଼ ସେମାନେ ଅନାଚାରି ହୋଇ ରାଜ-ସେବାରେ ନିଜକୁ ନିଯୁକ୍ତ କରି ଦଣ୍ଡପାଟ ଆଦେଶ ବସିବେ । ବେଦ ମନ୍ତ୍ର ଛାଡ଼ ସେମାନେ ହେବେ ହଳ ଲଙ୍ଗଳ ଧାରି । ଥୋକେ ବ୍ରାହ୍ମଣ ବି ସହସ୍ର ଧାରଣ କରି ଯୁଦ୍ଧରେ ଅପର ପକ୍ଷର ସୈନ୍ୟଙ୍କୁ ହାଣି ରକ୍ତର ସୁଅ ଛୁଟାଇ ଦେବେ । ସେମାନଙ୍କର କନ୍ୟାଙ୍କୁ ମଧ୍ୟ ଶୂଦ୍ରମାନେ ବିବାହ କରିବେ । ଉଚ୍ଚ ଜାତି ବ୍ରାହ୍ମଣଙ୍କ ଦୁଷ୍କର୍ମ ଦେଖି ଅନ୍ୟମାନେ ମଧ୍ୟ ଭୂଲ୍ ବାଟରେ ନିଜକୁ ଚଳାଇବେ । ସତ ବୋଲି ଜିନିଷ କିଛି ରହିବ ନାହିଁ । ମିଥ୍ୟା, ଅନ୍ୟାୟ ଚେଷ୍ଟାରେ ଲୋକ-ମାନେ ନିଜକୁ ନିୟୋଜିତ କରିବେ ।

ସହଦେବଙ୍କ ମୁହଁରୁ କଥା ସବୁ ଶୁଣି ଯୁଧିଷ୍ଠିର କହିଲେ, ତାହା-ହେଲେ ଆମେ ଆଉ ଏଠାରେ ରହିବା କାହିଁକି ? ଏଭଳି ଗୋଟାଏ ଅନ୍ୟାୟର ଯୁଗ ଆସୁଛି ବୋଲି ଯେତେବେଳେ ଭଗବାନଶ୍ରୀକୃଷ୍ଣ ଆମକୁ ଛାଡ଼ି ଚାଲିଯାଇ-ଛନ୍ତି, ସେତେବେଳେ ଆଉ ଏ ଦୁନିଆରେ ଅଧିକ ଦିନ ରହି କି ଭୋଗ କରିବା ଏଭଳି ଅସମ୍ଭବ ଯୁଗରେ ଆମେ ଏ ଧରାର ଭାର ନେବା ଅପେକ୍ଷା ଏ ଦୁନିଆଁରୁ ବିଦାୟ ନେଇଯିବା ଭଲ । ତା ନ ହେଲେ ଆମର ସମସ୍ତ ସୁକୃତି ଶୂନ୍ୟ ହୋଇଯିବ । ଭାଗ୍ୟ ଭଲ କଳି ଏହା ପୂର୍ବରୁ ଧରାକୁ ଓହ୍ଲାଇ ଆସିନାହିଁ ।

ନା ଭାଇ ! କଳିଯୁଗ ବହୁତ୍ ଦିନରୁ ଏ ଧରାକୁ ଆସିଗଲଣି । ଯେଉଁ ଦିନ ବନ୍ଧୁ ଶ୍ରୀକୃଷ୍ଣ ଦୂତ ହୋଇ କୌରବମାନଙ୍କ ପାଖକୁ ଯାଇଥିଲେ, ସେହି ଦିନ କଳିଯୁଗ ଏ ଧରାରେ ପ୍ରବେଶ କରିଥିଲା । ମହାଭାରତ ଯୁଦ୍ଧର ଶେଷ

ପର୍ଯ୍ୟନ୍ତ କଳି ତାର ପ୍ରଭାବ ବେଶ୍ କିଛି ବିସ୍ତାର କଲା । ମାତ୍ର ଯେଉଁଦିନ ମହାଭାରତର ଯୁଦ୍ଧ ଶେଷ ହୋଇଗଲା, ସେଦିନ ଶ୍ରୀକୃଷ୍ଣ ମୋତେ ଡାକି କହିଲେ ଦେଖ ସବୁଦିନେ ଯୁଧିଷ୍ଠିର ବଣରେ ରହି କଷ୍ଟ ଭୋଗ କଲେ । ରାଜାଘରେ ଜନ୍ମଲାଭ କରି ସୁଖ ବୋଲି କଣ ସେ ଜାଣିଲେ ନାହିଁ । ଏତେବଡ ଗୋଟାଏ ଯୁଦ୍ଧରେ ଭାଇ, ବନ୍ଧୁ, କୁଟୁମ୍ବ ହରାଇ ଯଦି ଟିକିଏ ଭଲଭାବେ ରାଜ୍ୟଭୋଗ କରି ନ ପାରନ୍ତି ତେବେ ତାଙ୍କ ଭଳି ସତ୍ୟାନଷ୍ଟ ବ୍ୟକ୍ତି କିଏ ପାଇବ । ତେଣୁ ତୁ ବର୍ତ୍ତମାନ ଏ କଳିମୁଣ୍ଡକୁ ବାନ୍ଧିପକା । କିଛି ଦିନ ଯୁଧିଷ୍ଠିର ରାଜ୍ୟଭୋଗ କଲାପରେ ପୁଣି ତାକୁ ତୁ ଫିଟାଇ ଦେବୁ ।

ଧର୍ମ ଯୁଧିଷ୍ଠିର ବିସ୍ମିତ ହେଲେ ସହଦେବଙ୍କ କଥା ଶୁଣି । କଳିର ପ୍ରଭାବ ଯଦି ଏଭଳି ଅମିତ ତେବେ ଆଉ କିଛି ଦିନ କଳିକୁ ବାନ୍ଧି ରଖିଥିଲେ ହୋଇଥାନ୍ତା ।

ଯୁଧିଷ୍ଠିର କିଛି ନ କହିଲେ ମଧ୍ୟ ସହଦେବ ସର୍ବଜ୍ଞ । ସେ ଯୁଧିଷ୍ଠିରଙ୍କୁ କହିଲେ; ସେହିଦିନ ଠାରୁ ଶ୍ରୀକୃଷ୍ଣଙ୍କ ଆଦେଶରେ ମୁଁ କଳିକୁ ବାନ୍ଧିପକାଇଥିଲି । ମାତ୍ର ଆଜି ଶ୍ରୀକୃଷ୍ଣ ଶୂନ୍ୟରେ ଥାଇ କହିଲେ ତାକୁ ଫିଟାଇ ଦେବାକୁ । କଳିର ପ୍ରଭାବ ଜଣା ନ ପଡ଼ିଲେ, ଭାଇ ଅର୍ଜ୍ଜୁନ ସ୍ୱର୍ଗକୁ ଯିବେ ନାହିଁ । ଅର୍ଜ୍ଜୁନଙ୍କୁ ଛାଡ଼ି ଶ୍ରୀକୃଷ୍ଣ ବ୍ୟସ୍ତ । ଏଣେ ମଧ୍ୟ ସ୍ୱର୍ଗରେ ଆପଣଙ୍କ ଭଳି ଲୋକ ନ ଥିବାରୁ ସ୍ୱର୍ଗର ଲୋକେ ଆପଣଙ୍କୁ ପାଇବା ପାଇଁ ଆତୁର । ତେଣୁ ମୁଁ ବାଧ୍ୟ ହେଲି କଳିକୁ ବନ୍ଧନରୁ ମୁକ୍ତ କରିବାକୁ ।

ଯୁଧିଷ୍ଠିର ଗମ୍ଭୀର ହୋଇଗଲେ ସହଦେବଙ୍କ କଥା ଶୁଣି । ସେ କହିଲେ ଭଲକଲୁ ବାବୁ କଳିକୁ ବନ୍ଧନରୁ ମୁକ୍ତ କରି । ମାତ୍ର ଏଥର ଚାଲ ଏ ରାଜ୍ୟ ଛାଡ଼ି ଯେଉଁଠି କଳିର ପ୍ରଭାବ ନାହିଁ ସେଠାକୁ ପଳାଇବା । ଆଉ ଗୋଟିଏ ମୁହୂର୍ତ୍ତ ଏଠାରେ ରହିବାକୁ ଇଚ୍ଛା ହେଉନାହିଁ ।

ସୁରେଶ୍ୱର ପଣ୍ଡା କହି ଉଠିଲେ, ଆପଣତ ଏ ରାଜ୍ୟ ଛାଡ଼ି ପଳାଇ ଯାଉଛନ୍ତି, କିନ୍ତୁ ଏହି ସୁନାଝରର ପ୍ରକୃତ ମାଲିକ କିଏ ତାହାତ କହି ଗଲେ ନାହିଁ ?

ହଳଆ ଚଉପା କହିଲା, ସେ ଆଉ କଣ କହିବେ ? ମୁଁ ପରିଶ୍ରମ କରି ଏ ସୁନାଝୁଣ୍ଟିକୁ ମାଟି ପଥର ଚାଡ଼ ବାହାର କଲି ଏହା ମୋର । ଆପଣ ଉଚ୍ଚ ବ୍ରାହ୍ମଣ ଜାତି ହୋଇ ଏଭଳି ଅନ୍ୟାୟ କଥା କହୁଛନ୍ତି କପରି ?

ସହଦେବ ଅନାଇଲେ ଦୁଇ ଜଣଙ୍କୁ । ସେ ଉଭୟଙ୍କୁ କହିଲେ, ଏ ସୁନାର ଝୁଣ୍ଟି ତୁମ କାହାର ନୁହେଁ । ମାଟି ତଳର ଜିନିଷ ରଜା ଛଡ଼ା ପ୍ରଜାର କେବେ ହୋଇ ପାରେନା । ଏହା ଯେ ରଖ୍ନ୍ତି, ସେ ପାଉନା କହିଁକି, ଏହାର ପ୍ରକୃତ ଅଧିକାରୀ ରଜା ।

ସହଦେବଙ୍କ ପାଟିରୁ କଥା ସରୁ ନ ସରୁଣୁ ରାଜ କର୍ମଚାରୀ ଚଉପା ଠାରୁ ଜୋର କରି ସେହି ସୁନା ଝୁଣ୍ଟି ଛଡ଼ାଇ ନେଲେ । ଚଉପା ଚିତ୍କାର କରି ଉଠିଲା ମହାରାଜ ! ବହୁ ପରିଶ୍ରମ କରି ପଥର ଚାଡ଼ ମାଟି ଭିତରୁ ଏଭଳି ଏକ ଅମୂଲ୍ୟ ଧନ ପାଇଥିଲି । ଆପଣ ମୋ ପ୍ରତି ସୁବିଚାର କରି ଏହାର ପୁନର୍ବିଚାର କରନ୍ତୁ ।

କାନ୍ଦ କାନ୍ଦ ହୋଇ ସୁରେଶ୍ୱର ପଣ୍ଡା କହିଲେ, ମହାରାଜା ଏ ଧନଟି ଗୋଟିଏ ଗରିବ ବ୍ରାହ୍ମଣ ଭୂମିରୁ ବାହାରିଛି । ଭୂମିଟି ଯେତେଦିନ ବ୍ରାହ୍ମଣର ସେତେବେଳେ ଭୂମି ମଧ୍ୟରେ ଥିବା ସମସ୍ତ ଜିନିଷ ସେହି ବ୍ରାହ୍ମଣର ହେବାର କଥା । ଅରେ ଏ ବଗୁର ବ୍ରାହ୍ମଣ ଆଡକୁ ଆପଣ ଅନାନ୍ତୁ ଆପଣ ଧର୍ମଙ୍କ ଅବତାର ବୋଲି ସମସ୍ତେ ଜାଣନ୍ତି । ଧର୍ମଙ୍କ ଦରବାରରେ ଯଦି ମୁଁ ସୁବିଚାର ନପାଇବି ତେବେ ଆଉ କେଉଁଠି ପାଇବି ?

କିନ୍ତୁ ଧର୍ମ ଯୁଧିଷ୍ଠିର ଦୁହିଙ୍କର କଥା ଶୁଣି ନ ଶୁଣିଲା ଭଳି ଦୁହିଙ୍କୁ ପଛ କରି ନବର ଆଡକୁ ମୁହଁ କରି ଚାଲିଥିଲେ । ତାଙ୍କ ପଛରେ ଥାନ୍ତି ମନ୍ତ୍ରୀ ସହଦେବ । ରାଜ କର୍ମଚାରୀ ସେହି ସୁବର୍ଣ୍ଣ ଝୁଣ୍ଟିକୁ ଦୃଢ଼ ହସ୍ତରେ ଧରି ତାଙ୍କ ପଛରେ ଚାଲିଥାନ୍ତି । ନିର୍ବାକ ହୋଇ ଛିଡ଼ା ହୋଇ ଥାନ୍ତି । କଳିକବଳରେ କବଳିତ-ଦେଖଣାହାରୀ ଜନପ୍ରଜା !



# ଶାନ୍ତ ଶୃଙ୍ଗ

ସମସ୍ତେ ନୀରବ । ଅସଂଖ୍ୟ ଲୋକ କ୍ଷେତ୍ରଟିରେ ପୂରି ରହିଥିଲେ ମଧ୍ୟ କାହାରି ଟିକିଏ ହେଲେ ପାଟି ଶୁଭୁନି ନାହିଁ । ଏଭଳି କି ବହୁ ଘୋଡ଼ା ହାତୀ ଉଭୟ ପାର୍ଶ୍ୱରେ ସଜିତ ହୋଇ ଛିଡ଼ା ହୋଇଥିଲେ ବି ସେମାନେ ସ୍ଥାଣୁ ଭଳି ଦଣ୍ଡାୟମାନ । ଶବ ଗୁଡ଼ିକୁ ଖାଇବା ପାଇଁ ବିଲୁଆ-ଶାଗୁଣାଙ୍କ ମଧ୍ୟରେ

ବରାବର ବିବାଦ ହେଉଥିଲେ ବି ସେମାନେ ଗୋଟିଏ ଅଦେଖିଭୁକ ଆଶଙ୍କାରେ ନୀରବ । ପଂକ୍ତି ପଂକ୍ତି ହୋଇ ଶ୍ୟେନ ପକ୍ଷୀ ଅନ୍ୟ ସମୟରେ ଆକାଶକୁ ଆଚ୍ଛନ୍ନ କରି ଉଡ଼ି ବୁଲୁଥାନ୍ତି । ମାତ୍ର ସେତେବେଳେ ଗୋଟିଏ ହେଲେ ବି ଶ୍ୟେନ ପକ୍ଷୀ ଆକାଶରେ ଦେଖାଯାଉ ନଥାଏ ।

ବୀରମାନେ ପରସ୍ପରର ଧର୍ମରକ୍ଷା କରିବାକୁ ସମବେତ । ଧର୍ମ ଯେତେବେଳେ ବିପଦଗ୍ରସ୍ତ ସମାଜ ଯେତେବେଳେ ବିପଥଗାମୀ ସେତେବେଳେ ଧର୍ମରକ୍ଷା କରିବାକୁ ଭଗବାନ ଶରୀର ଗ୍ରହଣ କରିଥାନ୍ତି । ଧର୍ମ କ୍ଷେତ୍ରରେ ଧର୍ମରକ୍ଷାକାରୀଙ୍କ ସହିତ ସ୍ୱୟଂ ଚକ୍ରଧାରୀ ମଧ୍ୟ ଉପସ୍ଥିତ । କିନ୍ତୁ ସେ କୌଣସି ସଂହାର ବା ସୃଷ୍ଟି ପାଇଁ ଉପସ୍ଥିତ ନୁହନ୍ତି । କେବଳ ଦ୍ରଷ୍ଟା ପୁରୁଷ ଭଳି ରଥର ସାରଥି ମାତ୍ର । ଅସ୍ତ୍ର ଧରିବାର ଅଧିକାର ତାଙ୍କର ନାହିଁ କିମ୍ବା କାହାକୁ ଭଲ ମନ୍ଦ କହିବାର ସ୍ୱତନ୍ତ୍ରତା ମଧ୍ୟ ନାହିଁ । ରଥୀର ଆଦେଶ ଅନୁସାରେ ରଥ ଚଳାଇବା ତାଙ୍କର କାମ ।

ଯୁଦ୍ଧ ଦୁଇ ପକ୍ଷର । ଗୋଟିଏ ପକ୍ଷରେ କୌରବ ମାନେ-ଅନ୍ୟ ପକ୍ଷରେ ପାଣ୍ଡବ ମାନେ କୁରୁ ବଂଶର ନାମାନୁଯାୟୀ କୌରବ ଏବଂ ପାଣ୍ଡୁଙ୍କ ପୁତ୍ରମାନେ ପାଣ୍ଡବ । ଧୃତରାଷ୍ଟ୍ର, ପାଣ୍ଡୁ ଦୁଇଭାଇ । କୌରବମାନେ ଧୃତରାଷ୍ଟ୍ରଙ୍କ ପୁଅ ଏବଂ ପାଣ୍ଡୁଙ୍କ ପୁଅ ପାଣ୍ଡବ ମାନେ । ପାଣ୍ଡବ ପାଞ୍ଚଭାଇ ପାଣ୍ଡୁଙ୍କର ପୁଅ ହେଲେ ମଧ୍ୟ ଯୁଧିଷ୍ଠିର ଧର୍ମଙ୍କ ପୁତ୍ର,ଭୀମ ପବନଙ୍କ ପୁତ୍ର, ଅର୍ଜୁନ ଇନ୍ଦ୍ରଙ୍କ ପୁତ୍ର,ନକୁଳ ଅଶ୍ୱିନି କୁମାରଙ୍କର,ଏକମାତ୍ର ସହଦେବ ପାଣ୍ଡୁଙ୍କର ପୁତ୍ର ଥିବାରୁ

ବାପର ସମ୍ପତ୍ତିରୁ ସମାନସ୍ତେ ଭାଗପାଇବା ହକଦାର ନୁହନ୍ତି । ତେଣୁ ଧୃତରାଷ୍ଟ୍ରଙ୍କ ପୁତ୍ର ମାନେ ପାଣ୍ଡବଙ୍କୁ ଭାଇ ଭାଗରୁ କୌଣସି ଭାଗ ଦେବାକୁ ରାଜି ନ ହେବାରୁ ଯୁଦ୍ଧ କରିବା ଆବଶ୍ୟକ ହେଲା । ଏ ଭୂମି ଚିତ୍ରର ନାଟକର ଏହା ହେଲା ମୂଳ କଥା । ପନ୍ଦର ଦିନ ଯୁଦ୍ଧ ସରି ଯାଇଛି । କୁରୁ ପକ୍ଷରୁ ଦଶଦିନ ଭୀଷ୍ମ ସେନାପତି ହୋଇ ଯୁଦ୍ଧ କଲେ । ତାପରେ ପାଞ୍ଚଦିନ ଯୁଦ୍ଧ କଲେ ଗୁରୁ ଦ୍ରୋଣ । ତାଙ୍କ ପତନ ପରେ ସେନାପତି ହେଲେ କର୍ଣ୍ଣ । କର୍ଣ୍ଣଙ୍କର ପ୍ରଥମ ଦିନ ଯୁଦ୍ଧରେ ଅଠାନବେ ଭାଇଙ୍କର ପତନ ଘଟିଲା । ଦ୍ୱିତୀୟ ଦିନ ଯୁଦ୍ଧ ଚାଲିଛି ।

କର୍ଣ୍ଣଦ୍ୱାରା ପରାଭବ ପାଇ ଯୁଧିଷ୍ଠିର ଯୁଦ୍ଧ କ୍ଷେତ୍ରରୁ ଅଭିମାନ କରି ପଳାଇ ଯାଇଛନ୍ତି । ତାଙ୍କ ଅଭିମାନ ଭଙ୍ଗ କରିବାକୁ ଶ୍ରୀକୃଷ୍ଣ ଏବଂ ଅର୍ଜୁନ ଯାଇଛନ୍ତି । ଅର୍ଜୁନ ଆସିବା ଯାଏ ଭୀମ, ନକୁଳ, ସହଦେବ, ଧୃଷ୍ଟଦ୍ୟୁମ୍ନ ଓ ଶ୍ରୀଖଣ୍ଡୀ ଲାଗି ପଡ଼ିଛନ୍ତି ଯୁଦ୍ଧରେ । ବେଳୁ ବେଳ ଯୁଦ୍ଧ ଭୟଙ୍କର ଆକାର ଧାରଣ କରୁଥାଏ । ପୂର୍ବଦିନ ଅଠାନବେ ଭାଇଙ୍କର ମୃତ୍ୟୁ ହୋଇଥିବା ହେତୁ ଦୁଃଶାସନ ପ୍ରଚଣ୍ଡ ହୋଇ ଉଠିଛନ୍ତି । ତାଙ୍କ ଆଗରେ ପଡ଼ିଗଲା ଶ୍ରୀଖଣ୍ଡୀ । ଦୁଃଶାସନ ଭଳି ବୀର ସହିତ ଶ୍ରୀଖଣ୍ଡୀ ବା କି ଯୁଦ୍ଧ କରିବ ? ତଥାପି ଦୁଃଶାସନ ଉପରକୁ ଶହେଟି ନାରାଚ ଶ୍ରୀଖଣ୍ଡୀ ନିକ୍ଷେପ କଲା ଦୁଃଶାସନ ସେହି ନାରାଚ ଗୁଡ଼ିକୁ ପାଞ୍ଚଶହ ନାରାଚ ଦ୍ୱାରା ନିବାରଣ କଲେ । ତାପରେ ଦୁଃଶାସନ ଚଉଷଠି ଚଉଷଠି ଭାର ଦୁଇଟି ଗଦା ଦୁଇ ହାତରେ ଧରି ଡେଇଁ ପଡ଼ିଲେ ରଥ ଉପରୁ । ସେହି ଗଦା ଦୁଇଟି ବୁଲେଇ ବୁଲେଇ ପିଟିଦେଲେ ଶ୍ରୀଖଣ୍ଡୀ ରଥରେ । ଗଦାର ପ୍ରଚଣ୍ଡ ପ୍ରହାରରେ ଭାଙ୍ଗିଗଲା ଶ୍ରୀଖଣ୍ଡୀର ରଥ । ରଥ ବିହୀନ ହୋଇ ଗୋଟିଏ ଭୂଷଣ୍ଡି ଧରି ଶ୍ରୀଖଣ୍ଡୀ ପିଟିଲା ଦୁଃଶାସନଙ୍କ ଉପରେ । ଭୂଷଣ୍ଡିର ନିର୍ଘାତ ପ୍ରହାର ତାଙ୍କ ଉପରେ ବାଜିବା ପୂର୍ବରୁ ଦୁଃଶାସନ ଛଡ଼ାଇ ନେଲା ଶ୍ରୀଖଣ୍ଡୀ ହାତରୁ ଭୂଷଣ୍ଡିଟି । ତାପରେ ସେହି ଭୂଷଣ୍ଡି ପ୍ରହାର କଲେ ଦୁଃଶାସନ ଶ୍ରୀଖଣ୍ଡି ଉପରେ । ଭୂଷଣ୍ଡିର ଆଘାତ ସହ୍ୟ କରି ପାରିଲା ନାହିଁ

ଶ୍ରୀଖଣ୍ଡୀ ଅସାଷ୍ଟମ ହୋଇ ସେ ତଳେ ପଡ଼ିଗଲା । ତାପରେ ଧୂଶାସନ ରାଗରେ ବଢେ କର୍ଣ୍ଣକଟାର ଧର ଶ୍ରୀଖଣ୍ଡିର ମୁଣ୍ଡକୁ ଗଣ୍ଡିଠାରୁ ଅଲଗା କରଦେଲେ ।

ଧୂଶାସନର ପ୍ରଚଣ୍ଡ ମୂର୍ତ୍ତି ଦେଖି ପାଣ୍ଡବସେନା ଭୟରେ ଏଣେ ତେଣେ ପଳାଉ ଥାନ୍ତି । ଠିକ୍ ଏତିକି ବେଳେ ନକୁଳ ଭୀମସେନଙ୍କୁ କହିଲେ, ଧୂଶା-ସନ ଶ୍ରୀଖଣ୍ଡିକୁ ମାରଦେଲା । ଧୂଶାସନର ନାଁ ଶୁଣୁ ଶୁଣୁ ଭୀମସେନ କହିଲେ ଧୂଶାସନ କ'ଣ ଯୁଦ୍ଧକ୍ଷେତ୍ର ରେ ଅଛି ? ମୁଁ ତ ତାକୁ ଖୋଜ କେଉଁଠି ପାଇଲି ନାହିଁ ।

ନକୁଳ ବାଟ କଢ଼ାଇ ଭୀମସେନଙ୍କୁ ଆଗୋଇ ନେଲେ ଧୂଶାସନଙ୍କ ପାଖକୁ । ଶ୍ରୀଖଣ୍ଡୀଙ୍କୁ ବଧ କର ଧୂଶାସନ ପାଣ୍ଡବଙ୍କ ସୈନ୍ୟ ମାରବାରେ ଲାଗିପଡ଼ିଥାଏ । ସେ ହଠାତ୍ ଭୀମସେନଙ୍କୁ ଦେଖିବାକୁ ପାଇଲେ । ଗତ କାଲି ଏଇ ଭୀମ ତାର ଅଠାନବେ ଭାଇଙ୍କୁ ମାର ଦେଇଛି । ଭୀମଙ୍କୁ ଦେଖ୍ ଦେଖ୍ ରେ ରେ କାର କର ଧାଇଁଲେ ଧୂଶାସନ । ବଡ଼ ପାଟିରେ ସେ ଭୀମଙ୍କୁ ଡ଼ାକି କହିଲେ । ଆରେ କାଳିଆ ମୋର ବାଳୁତ ଅଠାନବେ ଭାଇଙ୍କୁ ମାରଛୁ । ତୋର ଟିକିଏ ହେଲେ ଧର୍ମଜ୍ଞାନ ନାହିଁ, ବାଳୁତ ପିଲାଗୁଡ଼ାକୁ ମାର ପକାଇଲୁ ଆଜ ତୁ ମୋ ହାବୁଡ଼େ ପଡ଼ିଛୁ । ତୋର ରକ୍ତରେ ସେମାନଙ୍କ ମୃତ୍ୟୁ ଶୋକ ଭୁଲିବି ।

ଠୋ ଠୋ ହୋଇ ହସି ଉଠିଲେ ଭୀମସେନ । ସେହି ତାଙ୍କଙ୍କ ହସ ରେ କ୍ଷଣକ ପାଇଁ ସ୍ତବ୍ଧ ହୋଇଗଲା ଏତେବଡ଼ କୁରୁକ୍ଷେତ୍ର ସମର ପ୍ରାଙ୍ଗଣ । ହସି ହସି ଭୀମସେନ କହିଲେ, ଆରେ ତୁମେ କୌର ପଞ୍ଝାଟା ଖାଲି ଧର୍ମ ଧର୍ମ ମୁହଁରେ କହୁଥାଅ । କାର୍ଯ୍ୟରେ ତ ଟିକିଏ ହେଲେ ଧର୍ମ ନାହିଁ । ଯଦି ଧର୍ମ ତୁମ କାର୍ଯ୍ୟରେ ଥାନ୍ତା । ତେବେ ମୋତେ କଣ ବିଷଲଡ଼ୁ ଦେଇ ମାର ଦେବାକୁ ଇଚ୍ଛା କରଥାନ୍ତ ? ପୁଣି କପଟରେ ଛଣପଟ ଦୁଆଡ଼ିଅ, ଜଉରେ ଗୋଟିଏ ଘର ବନସ୍ତ ଭିତରେ କର ଗୋଖର ସାପଭଳି ସେ ଯେଉଁ ପୁର-ଞ୍ଜନ ପଣ୍ଡା ତା ହାତରେ କଣ ତାକୁ ପୋଡ଼ି ଦେଇଥାନ୍ତ । ଭାଗ୍ୟ ବଳରୁ ଆମେ ବଞ୍ଚିଗଲୁ ଆମେ ବଞ୍ଚିଗଲୁ ସିନା, ନହେଲେ ତ ଆମ କାମ ସରଥାନ୍ତା । ଗୋଟାଏ

ବାଳ୍ମିତ ପୁଅ ଅଭିମନ୍ୟୁ ତାଙ୍କୁ ସମସ୍ତେ ଘେରି ବଧ କରିବା କଣ ତମ ଧର୍ମରେ ରହିଛି । ଧର୍ମନାମରେ ତୁମର ଯେଉଁ କପଟ ପଶାଖେଳ ତାହା କେହି କଣ କେବେ ଭୁଲିଯିବ । ଅନ୍ୟର ଧୃତରାଷ୍ଟ୍ର, ପଣ୍ଡୁ ଗୋଟିଏ ବାପର ପୁଅ । ପଣ୍ଡୁର ବୋହୂକୁ ଯେଉଁଭଳି ତୁମେ ସଭା ମଧ୍ୟରେ ଗୁରୁଜନଙ୍କ ଆଗରେ ବିବ-ସନା କଲ ତାହାତ ନିଶ୍ଚୟ ତୁମ ଧର୍ମାଚରଣର ଚରମ ବ୍ୟବସ୍ଥା । ସେହିଦିନୁ ଦ୍ରୌପଦୀ ଏ ପର୍ଯ୍ୟନ୍ତ ମୁଣ୍ଡବାଳ ବାନ୍ଧି ନାହିଁ । ତୁ ମଲେ ତୋର ରକ୍ତରେ ସେ ତା ବେଣୀ ବାନ୍ଧିବ ।

ଭୀମସେନଙ୍କ କଥା ଦୁଃଶାସନଙ୍କୁ ଭଲ ଲାଗିବାତ ଦୂରରେ ଅଛି, ତାଙ୍କୁ କ୍ରୋଧରେ ପ୍ରଚଣ୍ଡ କରି ତୋଳିଲା । ସେ ରାଗିଯାଇ ଭୀମ ଉପରକୁ ଶହେଟି ନାରାଚ ବର୍ଷିଲେ । ସଙ୍ଗେ ସଙ୍ଗେ ଭୀମ ଧନୁର୍ଧର ଶର ମାରି ଦୁଃଶାସନର ଶର ଗୁଡ଼ିକୁ ଆକାଶି କରି ଦେଲେ । ଏହାଦ୍ୱାରା ବୀର ଦୁଃଶାସନ ଆହୁରି ଅଧିକ ରାଗି ହାତବୋଡ଼ା ଶର ସନ୍ଧାନ କଲେ । ତଦ୍ୱାରା ଭୀମଙ୍କ ରଥ ସାରଥି ନଷ୍ଟ ହୋଇଗଲା । ଏଥିରେ ସେ ବିରଥି ହୋଇ ଗଦାଧରି ଧାଇଁ ଗଲେ ଦୁଃଶାସନ ପାଖକୁ । ଏକା ପ୍ରହାରକେ ଦୁଃଶାସନର ରଥ, ଅଶ୍ୱ, ସାରଥି ଭୂମିଶାୟୀ ହେଲେ । ଏଥର ଦୁଃଶାସନ ଖଣ୍ଡାଟାଏ ଧରି ଧାଇଁଲେ ଭୀମଙ୍କ ପାଖକୁ । ଦୁଃଶାସନ ହାତରେ ଖଣ୍ଡା ଦେଖି ଭୀମ ମଧ୍ୟ ଖଣ୍ଡାଟା ଧରି ଛୁଟି ଆସିଲେ ଦୁହିଁଙ୍କର ଖଣ୍ଡା ଦୁହିଁଙ୍କ ଉପରକୁ ପ୍ରଚଣ୍ଡ ବେଗରେ ମାଡ଼ି ଆସିଲା । ଖଣ୍ଡାକୁ ଖଣ୍ଡା ବାଜି ଭାଙ୍ଗିଗଲା ଦୁଇ ଜଣଙ୍କ ଖଡ଼୍ଗ । ଗାନ୍ଧାରୀଙ୍କ ପୁଅ ଦୁଃଶାସନ କଇଛା ନଗ୍ନଜେଠୀ । ସେ ଚଉଷଠୀ ଚଉଷଠୀଭାର ଦୁଇଟି ଗଦା ଧରି ଧାଇଁ ଗଲେ ଭୀମଙ୍କ ପାଖକୁ । ସଙ୍ଗେ ସଙ୍ଗେ ଭୀମ ମଧ୍ୟ ବାଉନ ଭାର ଗଦାଧରି ତାଙ୍କୁ ଭେଟିଲେ । ଦୁଃଶାସନଙ୍କୁ ପ୍ରଚଣ୍ଡ ଗଦାର ଆଘାତ ବୀରଭୀମ ନିଜ ଗଦାଦ୍ୱାରା ନିବାରଣ କଲେ । ଉଭୟଙ୍କର ଗଦା, ଲୁହାରେ ଗଠିତ । ତେଣୁ ଗଦାକୁ ଗଦା ବାଜି ଝିଲିକାଏ ଲେଖାଁ ନିଆଁ ବାହାରି ପଡ଼ୁଥାଏ ।

ଦୁଃଶାସନ ଚଉଷଠୀ ଭାର ଗଦା ଧରିଲେ କଣ ହେବ ଭୀମଙ୍କ ବାଉନ ଭାର ଆଗରେ ତାର ଗଦା ସେ ଭଳି କାଟୁନାହିଁ । ଭୀମ ତାଙ୍କର ଶକ୍ତ ମୁଠା-

ବକ ବାଉନ ଥର ଗଦାଧର ସୁନ୍ଦର ଭାବେ ଗତାଗତ ହୋଇ ପାରନ୍ତି । ମାତ୍ର ଚଉଷଠୀଥର ଗଦା ଧରଲେ ମଧ୍ୟ ଧୃଶାସନଙ୍କୁ ଟିକଏ ବଳେଇ ଯାଏ । ଯଦ୍ୱାରା ଭୀମଙ୍କର ଗଦାପ୍ରହାରକୁ ସେ ପ୍ରତିହତ କରି ପାରନ୍ତି ନାହିଁ । ଖାଲି ଓଜନର ଜିନଷ ଧରିଲେତ ହେବ ନାହିଁ, ତାକୁ ଠିକ୍ ମତେ ବ୍ୟବହାର କରି ପାରିଲେ ହେଲା ।

ଯୁଦ୍ଧ ବେଶ ଜମି ଉଠୁଛି ଭୀମ ଧୃଶାସନଙ୍କ ଗଦା ଯୁଦ୍ଧରେ । ଗଦାକୁ ଗଦା ବାଜି ଅଗ୍ନିର ଝଲକରେ ଯୁଦ୍ଧଭୂମି ବିପୁଳ ଆଲୋକରେ ଭରିଯାଉଛି । ଦୁହିଁଙ୍କର ଗଦା ଦେଖିବାକୁ ପର୍ବତ ଭଳି, ପର୍ବତ ସହିତ ପର୍ବତର ଧକ୍କା ବାଜିଲେ ଯେଉଁ ଭଳି ଭୟଙ୍କର ଶବ୍ଦହୁଏ ତାହାଠାରୁ ଆହୁରି ଅଧିକ ଶବ୍ଦ ହେଉ ଥାଏ ଦୁହିଁଙ୍କର ଗଦାର ସଂଘର୍ଷରେ ହଠାତ୍ ଭୀମ ଦୁଶାସନଙ୍କ ଗଦା ଦୁଇକୁ ଏଭଳି ନିଜ ଗଦାଦ୍ୱାରା ଆଘାତ କଲେ ଯଦ୍ୱାରା ଧୃଶାସନଙ୍କ ଗଦା ଭାଙ୍ଗି ଚୂନା ହୋଇଗଲା । ଏଥର ଧୃଶାସନଙ୍କ ହାତ ଶୂନ୍ୟ । ଶୂନ୍ୟ ହସ୍ତ ହୋଇ ସେବା କି ଯୁଦ୍ଧ କରିବେ ଗଦାଧର ଭୀମ ସହିତ ! ଖାଲି ହାତରେ ଧୃଶାସନ ପଳେଇଗଲେ ଭୀମଙ୍କ ସମ୍ମୁଖରୁ । ଅରେ ରହ ରହ ବୋଲି ଭୀମ ଡାକ ଛାଡ଼ିଲେ । ଧୃଶାସନ ବଡ଼ ପାଟିରେ କହିଲେ ଶୂନ୍ୟ ହସ୍ତରେ ମୁଁ ତୋ ସହିତ କି ଯୁଦ୍ଧ କରିବ ? ତୋର ଦୁଇ ହାତରେ ଦୁଇଟି ଗଦା । ମୁଁ ଦୁଇଟି ଗଦା କେଉଁଠାରୁ ପାଇଲେତ ତୋତେ ଭେଟିବ ?

ସଙ୍ଗେ ସଙ୍ଗେ ଭୀମ ଉଚ୍ଚ ସ୍ୱରରେ କହିଲେ, ହେଇ ଦେଖ୍ ତୋହରି ପରି ଶୂନ୍ୟ ହସ୍ତ ହେବା ପାଇଁ ମୁଁ ମଧ୍ୟ ମୋର ଗଦା ଦୁଇଟିକୁ ଛାଡ଼ିଲି ।

ସଙ୍ଗେ ଗଦା ଦୁଇଟିକୁ ଫୋପାଡ଼ି ଦେଇ ଧୃଶାସନ ପାଖକୁ ଧାଇଁ ଗଲେ ଭୀମ । ଧୃଶାସନ ମଧ୍ୟ ଯେତେବେଳେ ଦେଖିଲେ ଭୀମ ଶୂନ୍ୟ ହସ୍ତ ସେତେବେଳେ ସେ ମଧ୍ୟ ଲେଉଟିଲେ ଭୀମଙ୍କ ସହିତ ମଲ୍ଲଯୁଦ୍ଧ କରିବାକୁ ।

ଦୁଇ ମଲ୍ଲଙ୍କର ଲଗିଗଲା ଯୁଦ୍ଧ । ପ୍ରଥମେ ପରସ୍ପର ମୁଥ ମରାମରି ହେଲେ । ତାପରେ ଧୃଶାସନ ଧରି ପକାଇଲେ ଭୀମଙ୍କ ହାତକୁ । ସଙ୍ଗେ

ସଙ୍ଗେ ଭୀମ ମଧ୍ୟ ତାଙ୍କର ଅପର ହାତକୁ ଟାଣି ଭିଡ଼ ଧରିଲେ । ଦୁହେଁ ହାତକୁ ହାତ ଛନ୍ଦା ଛନ୍ଦି ହେଲେ। ପରେ ଗୋଡକୁ ଗୋଡ଼ ଛନ୍ଦା ଛନ୍ଦି ହୋଇଗଲେ । ତାପରେ ଦୁହେଁ କର୍ଣ୍ଣଭିଡ଼ ହୋଇ ତଳେ ପଡ଼ିଗଲେ । ଭୁଜକୁ ଭୁଜ ପାଦକୁ ପାଦ ଛନ୍ଦା ଛନ୍ଦି ହେଲା ପରେ ବାକି ରହିଗଲା ସେମାନଙ୍କର ମୁଣ୍ଡ । ଦୁହେଁ ମଧ୍ୟ ତେଡ଼ା କରି ମୁଣ୍ଡକୁ ମୁଣ୍ଡରେ ପିଟି ଦେଲେ । ତା ପରେ ଦୁହିଁଙ୍କୁ ଦୁହେଁ ଭିଡ଼ି ଧରି ସେହି ନେହିତ କକର ଭୂମି ଉପରେ ଗଡ଼ି ଗଲେ କିଛି ବାଟ । ନାଲି ଉଠା ଖାଲି ଜମିରେ ଗଡ଼ିଯିବା ଫଳରେ ଦେହରେ ଗୋଡ଼ି ଗୁଡ଼ାକ ଉରଗଡ଼ ହୋଇ ଯାଇ ଦେହ ରକ୍ତାକ୍ତ ହୋଇଗଲା । କେତେଣିକ ସେମାନେ ଏଭଳି ଦେଖାଗଲେ ଯଦ୍ୱାରା ଟିକିଏ ଦୂରରୁ କିଏ ଭୀମ କିଏ ଧୂଷା କେହି ସହଜରେ ବାରି ପାରିଲେ ନାହିଁ । କେତେବେଳେ କାହାର ଜାନୁ ତଳେ କାହାର ମୁଣ୍ଡ ରହି ଗଲାଣିତ, କିଏ ଅପରକୁ ନଖରେ ଆମ୍ପୁଡ଼ି ତାକୁ ରକ୍ତାକ୍ତ କରି ଦେଉଛି । ଦୁହିଁଙ୍କ ରକ୍ତରେ କୁରୁକ୍ଷେତ୍ରର କିଛି ଅଂଶ ଭିଜିଗଲା । ଦୁହେଁ ଧରା ଧରି, ମରା ମରି, ଗଡ଼ା ଗଡ଼ି ହୋଇ ନିଶଙ୍କ ରଣଭୂମିରେ ମୃତ୍ୟୁକୁ ଅପେକ୍ଷା କରି ରହିଥିବା ସୈନ୍ୟବଳଙ୍କ ମନକୁ ଭୟ ବିଜଡ଼ିତ କରି ପକାଇଲେ । ସେମାନଙ୍କ ଦାନ୍ତର ରଟ ମଟ ଶବ୍ଦ ତ୍ରେତୟା ଯୁଗର ବାଳୀ ସୁଗ୍ରୀବ ସମର ଭଳି ମନେ ହେଲା ।

ଦୁହେଁ ଯୁଦ୍ଧ କରୁ କରୁ ତଳେ ଗଡ଼ିଗଲା ବେଳେ କୌଣସି ସୈନ୍ୟଙ୍କ ଦେହରେ ଯଦି ସେମାନେ ବାଡ଼େଇ ହୋଇ ଯାନ୍ତି, ତେବେ ସେ ତତ୍‌କ୍ଷତ୍ ତଳେ କର୍ଣ୍ଣଭିଡ଼ ହୋଇ ପଡେ ଓ ତା ଉପରେ ଏମାନେ ପିଟି ହୋଇ ତା ଦେହଟିକୁ କାଦୁଅ କରି ଦିଅନ୍ତି । ଅବସ୍ଥା ଲକ୍ଷ କରି ଉଭୟ ପକ୍ଷ ପରସ୍ପର ଠାରୁ ଦୂରେଇ ଗଲେ କିଛି ଦୂର । ବର୍ତ୍ତମାନ କେବଳ ଏହି ଦୁଇ ଜଣଙ୍କ ବ୍ୟତୀତ ଅନ୍ୟମାନେ ଖାଲିପାଖା ଦେଖଣାହାରି । ଦୁହେଁ ଏଭଳି ଭାବେ ପରସ୍ପର ସହିତ ଯୁଦ୍ଧରେ ବ୍ୟସ୍ତ ଯେ କାହାରିକୁ କେହି ଛାଡ଼ି ଦେବାକୁ ଆଦୌ ଇଚ୍ଛା କରୁ ନାହାନ୍ତି । ଜଣେ ଜଣଙ୍କୁ ତଳେ ପକାଉ ତା ଉପରେ ମାଡ଼ି ବସିଲା ବେଳେ, ଅନ୍ୟଜଣ ପରମୁହୂର୍ତ୍ତରେ ତାକୁ ପୁଣି ତଳେ ପକାଇ ତା ଉପରେ

ଉଠି ବସୁଛୁ । ସମରରେ ଦୁହେଁ ଅନର୍ଗଳ ଜଣେ ଜଣଙ୍କ ଠାରୁ କୌଣସି ମତେ ଖସି ଆସି ଛୁଟା ହୋଇ ପଡ଼ିବା ମାତ୍ରେ ଅପର ଜଣ ସଙ୍ଗେ ସଙ୍ଗେ ଛୁଟା ହୋଇଯାଇ ତାକୁ କପରି କାବୁ କରିଦେବ ସେଥି ପାଇଁ ବ୍ୟଗ୍ର ହୋଇ ଯନ୍ତେ । କ୍ରୁଦ୍ଧ କ୍ରୁଦ୍ଧ ଫୁଟ୍ ଫୁଟ୍ କାର ଧ୍ୱନି କରି ଚଉଷଠି ବନ୍ଧାଣରେ ମାଲଯୁଦ୍ଧ କରିବାକୁ ଦୁହେଁ ବ୍ୟଗ୍ରହୋଇ ପଡ଼ନ୍ତି । ହଠାତ୍ ଭୀମଙ୍କୁ ବେକାଇଦା କରି ତା ଉପରେ ଧୂଶାସନ ମାଡ଼ି ବସିଲେ । ଭୀମ ଯେତେଚେଷ୍ଟା କଲେ ମଧ୍ୟ ଧୂଶାସନକୁ ଟିକଏ ହେଲେ ତା ଉପରୁ ହଟେଇ ପାରିଲେ ନାହିଁ, ଧୂଶାସନ ତାଙ୍କ ବାମହାତରେ ଭୀମଙ୍କ ତଣ୍ଟିକୁ ଚିପି ଧରି ଡାହାଣ ହାତରେ ତାଙ୍କ ନାକକୁ ଖୁବ୍ ଜୋରରେ ଗୋଟିଏ ବିଧା ମାରିଲେ ଓ ବଡ଼ ପାଟିରେ ତାକୁ ସମ୍ବୋଧନ କରିଲେ । ଆରେ ଭୀମ ! କାଲି ମୋ ବାଳୁତ ଭାଇକୁ ମାରି ମୋ ପାଖରେ ତୋ ଯୋଦ୍ଧା ପଣ ଦେଖାଉଛୁ ? ଆଜି ମୁଁ ତୋତେ ବଧ କଲେ ସେମାନଙ୍କ ଆତ୍ମାମାନେ ତୃପ୍ତି-ଲାଭ କରିବେ ଏହା କହି ଆଉରି ଗୋଟାଏ ବଜ୍ରମୁଷ୍ଟି ଭୀମଙ୍କ ମୁହଁକୁ ମାରିଲେ ସେ ।

ନଚେଷ୍ଟା ହୋଇ ପଡ଼ିଥାନ୍ତି ଭୀମ । ଧୂଶାସନ ତା ମୁହଁକୁ ନାକକୁ ଯେତେ ମାଇଲେବି ସେ ଟିକଏ ହେଲେ ଉଁ କି ଚୁଁ ହେଉ ନ ଥାନ୍ତି । ନିରବରେ ସବୁ ମାଡ଼ ଗାଳିସହି ଯାଉଥାନ୍ତି । ସେଏମିତିପଡ଼ିଥାନ୍ତି ତାଙ୍କୁ ମନେହେବ ସତେ ଯେପରି ତାଙ୍କଦେହରେ ଆଉ ଜୀବନ ନାହିଁ । ଧୂଶାସନ ଏହି ସୁଯୋଗକୁ କେବେ ଛାଡ଼ିଦେଇ ପାରିଲେ ନାହିଁ । ସେ ନିଶ୍ଚିତ ହୋଇଗଲେ ଆଜି ଭୀମ ତାଙ୍କହାତରେ ବଧ ହେଲେ ।

ଗର୍ଜନ କରି ଧୂଶାସନ କହିଲେ ଏଥର ଦ୍ରୌପଦୀର କେଶ ପଖାଳିବାକୁ ଏଠିକୁ ଅଣାଉନୁ ! ସେ ପରି ପନ୍ଦର ବର୍ଷ ପଞ୍ଚସ୍ତ୍ରୋଣି ଦିନ ହେଲା ବାଳ ନ ବାନ୍ଧି ରହିଛୁ; ମୋ ରକ୍ତରେ ବାଳ ବାନ୍ଧିବ ବୋଲି । ତୋର ତ ଆଜି ଆୟୁଷ ପୂରିଲା, ଆଉ ସେ ବାଳ ବାନ୍ଧିବ କେଉଁ ଦିନ ଆରେ ଭୁ କୁଆଡେ ପରି ହିଂସ୍ର ଯମ, ତୋର ନା କୁଆଡେ ବୃକୋଦର ? ଏଥର ତୋର

ବଳଦର୍ପ ଟିକିଏ ଦେଖା । ତେଣେ ସଞ୍ଜୀବନୀ ପୁରରେ ଯମ ତୋ ନାଁ । ଟା ତା ପାଞ୍ଜିରୁ ପୋଛି ହୋଇସାରିଲଣି । ସେଥିପାଇଁ ମୋତେ ସେ ଯମଦୂତ କରି ପଠାଇଛି । ଏହିଭଳି ଧୂଶାସନ ନିଜକୁ ବରିଷ୍ଠ ଯୋଦ୍ଧା ମନେ କରି କହି ଚାଲିଥାନ୍ତି ଭୀମସେନଙ୍କୁ । ଭୀମ ନୀରବ । ସମସ୍ତେ ଯେତେବେଳେ ସେହିଭଳି ଆସିଛି ସେତେବେଳେ ସବୁ ସହିବାକୁ ପଡ଼ିବ, ସବୁ ଶୁଣିବାକୁ ପଡ଼ିବ ।

ଭୀମ ଉପରେ ଧୂଶାସନ ମାଡ଼ ବସି ମତ୍ତନାଗ ଭଳି ଗର୍ଜନ କରୁଥିବା ଏବଂ ତା ମୁହଁକୁ ଥରକୁ ଥର ମୁଥି, ବିଧା ମାରୁଥିବା ଦେଖି କୌରବ ଥାଟ ଅତ୍ୟନ୍ତ ଉଲ୍ଲସିତ । ସମସ୍ତଙ୍କ ମୁହଁରେ ଧୂଶାସନର ପ୍ରଶଂସା । ସମସ୍ତଙ୍କର ଧାରଣା ହୋଇଗଲା ଧୂଶାସନ ଯୋଗୁ କୁରୁଦଳ ବିଜୟୀ ହେଲେ । ନିଜେ ଦୁର୍ଯ୍ୟୋଧନ ମହାନନ୍ଦ । କିନ୍ତୁ ଶକୁନି ବିଷାଦ ଗ୍ରସ୍ତ । ସେ ମାନଗୋବିନ୍ଦଙ୍କୁ କହିଲା ଏତେ ବ୍ୟସ୍ତ ହେଉଛ କାହିଁକି, ଟିକିଏ ଥଇଧର । ମାନଗୋବିନ୍ଦ କହିଲେ, ହେଇ ହେଉନା ମାମୁଁ ! ଭୀମ କଣ ଆଉ ଜୀବନରେ ଅଛି ? ଧୂଶା ତ ବିଧାପରେ ବିଧା, ମୁଥ ପରେ ମୁଥ ତା ମୁହଁକୁ ମାରି ଚାଲିଛି । ତା ଦେହରେ ଜୀବନ ଥିଲେ ଟିକିଏ ହେଲେ ପ୍ରତିବାଦ କରନ୍ତା ନାହିଁ ? ଧରିନିଅ ଆଜିଠାରୁ ଯୁଦ୍ଧ ସରିଗଲା । ଯେତେବେଳେ ଗୋବିନ୍ଦ ଜାଣିବେ ଧୂଶା ଭୀମକୁ ମାରି ଦେଇଛି, ସେତେବେଳେ ସେ ଅର୍ଜୁନଙ୍କୁ ଧରି ପଳାଇବେ । ଆଉ ନକୁଳ ସହଦେବଙ୍କୁ ଧରି ଯୁଧିଷ୍ଠି ବା କଣ କରିବେ ? ଏଥର ନଗରରେ ଉତ୍ସବ କରାଅ, ଶତ୍ରୁଜିତ ପାତଙ୍ଗ ସବୁ ରଥରେ ବାନ୍ଧିଦିଅ ।

ପାଣ୍ଡବଙ୍କ ପକ୍ଷରେ ହା ହା କାର ଧ୍ୱନି । ନିଜେ ଧର୍ମଙ୍କ ନନ୍ଦନ ଯୁଧିଷ୍ଠି ଭୀମଙ୍କ ଗୁଣ ଗୁଣି କାନ୍ଦିବାକୁ ଆରମ୍ଭ କରିଦେଲେ । ପ୍ରକୃତରେ ଭୀମଙ୍କ ଯୋଗୁ ବହୁ ବିପଦରୁ ପାଣ୍ଡବମାନେ ଉଦ୍ଧାର ପାଇ ଆସିଛନ୍ତି । ଯୁଧିଷ୍ଠିଙ୍କ ରୋଦନ ଦେଖି ଧନୁର୍ଦ୍ଧାରୀ ପାର୍ଥ ମଧ୍ୟ ଆଖିର ଲୁହ ଗଡ଼ାଇ କାନ୍ଦିଲେ । କାନ୍ଦିଲେ ମଧ୍ୟ ନିଜେ ଶ୍ରୀକୃଷ୍ଣ । ନକୁଳର କାନ୍ଦ ସମସ୍ତଙ୍କ ଠାରୁ ବେଶୀ । କିନ୍ତୁ ଏକମାତ୍ର ସହଦେବ କାନ୍ଦୁ ନ ଥିଲେ । ଶ୍ରୀକୃଷ୍ଣଙ୍କ କାନ୍ଦ ଦେଖି ସେ ନାକରେ ହାତ ଦେଇ ହସୁଥିଲେ ।

ଶ୍ରୀକୃଷ୍ଣ ସହଦେବଙ୍କ ହସିବା ଦେଖି କହିଲେ, ଭୀମର ଏଭଳି ପରାଜୟ ବେଳରେ ତୁ ସହଦେବ ହସୁଛୁ କାହିଁକି ? ଏଥିର ଗୂଢ଼ ରହସ୍ୟ ତୁ ଯଦି କହୁ ଜାଣୁ ତେବେ କହିଲେ ଆମର ସଂଶୟ ଦୂର ହେବ । ଭୀମ ଭଳି ବୀର ଯଦି ଆଜି ଯୁଦ୍ଧରେ ପଡ଼ନ୍ତେ ତେବେ ଆଉ କିଏ ରହିଲା ଯେ ଯୁଦ୍ଧ କରିବା । ଲଙ୍କେ ରଜାର ମହୂତମଣି ଯେଉଁ ଜରାସନ୍ଧ, ଯାହାଙ୍କୁ କି କେହି ଯୁଦ୍ଧରେ ଜିଣି ପାରି ନଥିଲେ ତାଙ୍କୁ ଏକା ଭୀମ ବଧକଲା । ଯେଉଁ କୀଚକ ଭୟରେ ବିରାଟ ନଗର ଥରହର ହେଉଥିଲା, ଏଭଳି କେହି ବୀର ନ ଥିଲେ କୀଚକଙ୍କୁ ଯୁଦ୍ଧରେ ପରାଜୟ କରି ପାରିବ, ତାଙ୍କୁତ ଭୀମ ଠାକୁର ଗୋଟାଏ ସ୍ତ୍ରୀ ବେଶରେ ବଧ କରି ପାରିଥିଲେ । ତୁମେ କଣ ଜାଣିନାହିଁ ଭୀମଙ୍କର ଏହି ପରାଜୟ କଥା ?

ମହାରାଜ ପାଣ୍ଡୁ ଅନ୍ଧାର ବନେ କରିଥାନ୍ତି । ନବଜାତ ଶିଶୁକୁ କୋଳରେ ଧରି ଶତଶୃଙ୍ଗ ଉପରେ ଥାନ୍ତି ଜନନୀ କୋଇନ୍ତୀ । ଅନ୍ଧକାର ରାତି ପାହାଡ଼କୁ ଘେରି ରହିଥିବା ବଣ ଭିତରୁ ସତେ ଯେପରି ଅନ୍ଧକାର ବାହାରି ପାହାଡ଼ଟିକୁ ଅନ୍ଧକାରରେ ଘୋଡ଼ାଇ ଦେଇଛି । ହଠାତ୍ ପାହାଡ଼ ଚକ୍ରୁ ବାଘଟାଏ ଚିତ୍କାର କରି ଉଠିଲା । ଜନନୀ କୋନ୍ତୀ ହଠାତ୍ ବାଘର ହେଣ୍ଟାଳରେ ଚମକି ପଡ଼ିଲେ । ତାଙ୍କ କୋଳରୁ ଶିଶୁ ଭୀମ ପଡ଼ିଗଲେ ଶତଶୃଙ୍ଗ ଉପରେ । ଶତଶୃଙ୍ଗ ପର୍ବତ ଶତଯୋଜନ ସ୍ଥଳୀ । କୋଇନ୍ତୀଙ୍କ ଶିଶୁପୁତ୍ର ଭୀମଙ୍କ ଭାରରେ ଶତଶୃଙ୍ଗ ଭୂମିମଧ୍ୟକୁ ପଶିଗଲା ଭଳି ମନେହେଲା । ଭୀମ ଶତଶୃଙ୍ଗ ଉପରେ ପଡ଼ି ରାହା ଧରି ହାତଗୋଡ଼ ଛାଟି କାନ୍ଦିବା ପାଇଁ ଆରମ୍ଭ କରିଦେଲେ । ତାଙ୍କ ବାମ ପାଦର କାଣି ଆଙ୍ଗୁଳି ଶତଶୃଙ୍ଗ ଦେହରେ ବାଜି ଖଣ୍ଡେ ପଥର ପର୍ବତ ଦେହରୁ ଭାଙ୍ଗିଗଲା । କଷ୍ଟହେଲା ଶତଶୃଙ୍ଗଙ୍କୁ ଏହାଦ୍ୱାରା । ସେ ରାଗିଯାଇ ଅଭିଶାପ ଦେଲେ ତୁ ମୋତେ ପ୍ରଥମରୁ ପାଦରେ ପ୍ରହାର କରିଥିବା ହେତୁ ପ୍ରଥମ ଯୁଦ୍ଧରେ ହାରିବାକୁ ବାଧ ହେବୁ ।

ଶତଶୃଙ୍ଗ ପର୍ବତର ଅଭିଶାପ ମାତା କୋଇନ୍ତୀ ଶୁଣି ବଡ଼ ବ୍ୟସ୍ତ ହୋଇ ପଡ଼ିଲେ, ସେ ରାଗିଯାଇ କହିଲେ, ରେ ଅଚଳ ଗିରି ମୋର ନିଷ୍କଳଙ୍କ ପୁତ୍ରକୁ ଏକ ସାଧାରଣ ଘଟଣାରେ ଅଭିଶାପ ଦେଇଥିବା ହେତୁ ମୁଁ ତୋତେ

ଅଭିଶାପ ଦେବାକୁ ବାଧ୍ୟ ହେଉଛି । ଶିବବର ତାଙ୍କୁ ବନ୍ଧସ୍ୱରେ କହିଲ, ମା ଗୋ ! ମୋତେ ତୁମେ କୋପ କରନାହିଁ । ମୁଁ ଯେଉଁ ଶାପ ତୁମ ଶିଶୁପୁତ୍ରକୁ ଦେଲି ତାହା ଅବଶ୍ୟ ଫଳିବ । ସିଂହେକ ବଳ ତୁମ ପୁତ୍ରର ହେଲେ ମଧ୍ୟ ଯୁଦ୍ଧରେ ପ୍ରଥମେ ହାରିଲା ପରେ ଯଦି ସେ ମୋତେ ସ୍ମରଣ କରିବ ତେବେ ଶତସିଂହର ବଳ ତାହାର ଶରୀର ମଧ୍ୟରେ ସଞ୍ଚାରିତ ହେବ । ଇନ୍ଦ୍ର-ଚନ୍ଦ୍ର ଦେବାଦିଙ୍କ କେହି ତୁମ ପୁତ୍ରକୁ ଦିଗ୍ବିଜୟ ସମରରେ ଜିଣି ପାରିବେ ନାହିଁ ।

ବିସ୍ମିତ ହେଲେ ଭଗବାନ କୃଷ୍ଣ ସହଦେବଙ୍କ କଥା ଶୁଣି ।

ସହଦେବ ଧୀର ନମ୍ରସ୍ୱରରେ କହିଲେ, ପୂର୍ବରୁ ଶତଶୃଙ୍ଗର ଅଭିଶାପ ଥିବାରୁ ସ୍ୱୟଂ ଠାକୁର ମୂର୍ଚ୍ଛା ଯାଇ ପଡ଼ି ରହିଛନ୍ତି । ତା ନ ହେଲେ ବିଶ୍ୱରେ କାହାର ଶକ୍ତି ନାହିଁ ତାଙ୍କୁ ଯୁଦ୍ଧରେ ବଧ କରିବାକୁ ଦୂରର କଥା, ପରାସ୍ତ କରି ପାରନ୍ତା । ତାଙ୍କର ବର୍ତ୍ତମାନ ଶତଶୃଙ୍ଗର କଥା ମନେ ପଡ଼ୁ ନାହିଁ । ତୁମେ ତାଙ୍କୁ ତାହା ସ୍ମରଣ କରାଇ ଦିଅ । ଶତଶୃଙ୍ଗ ଧ୍ୱନି ତାଙ୍କ କର୍ଣ୍ଣରେ ପଡ଼ିବା ମାତ୍ରେ ସେ ଶତେ ସିଂହର ବଳ ଧରି ଉଠି ବସିବେ । ତାଙ୍କ ପ୍ରାକ୍ରମ ପାଖରେ ଧୃଷ୍ଟଦ୍ୟୁମ୍ନ ସାମାନ୍ୟ ମାତ୍ର ।

ଦୁଃଖରେ ମ୍ରିୟମାଣ ହୋଇ ଭଗବାନ କୃଷ୍ଣ ତାଙ୍କର ପାଞ୍ଚଜନ୍ୟ ଶଙ୍ଖକୁ ଭୁଲି ଯାଇଥିଲେ ସହଦେବ ସ୍ମରଣ କରାଇ ଦେବା ମାତ୍ରେ ସେ ତାହା ନିଜ ମୁଖରେ ଦେଇ ଫୁଙ୍କିବାକୁ ଆରମ୍ଭ କରିଦେଲେ । ବାଜି ଉଠିଲା ଶଙ୍ଖ ଘୋର ନାଦ କରି ।

ଅକଳନ୍ତା ପାଣ୍ଡବ କୌରବ ବାହିନୀ । ମାତ୍ର ସେତେବେଳେ ସମସ୍ତେ ନୀରବ । କେବଳ ରହି ରହି ଧୃଷ୍ଟଦ୍ୟୁମ୍ନର କୁହାଟ ଶୁଭ ଯାଉଥିଲା ଯାହା । ଶଙ୍ଖର ଗମ୍ଭୀର ନାଦ ତାର କୁହାଟକୁ ନିମ୍ନ କରି ବାଜି ଉଠିଲା ଶତଶୃଙ୍ଗ ଶତଶୃଙ୍ଗ ଶବ୍ଦ ଘୋଷଣା କରି ଯୁଦ୍ଧ କ୍ଷେତ୍ରର ସମସ୍ତ ଅଞ୍ଚଳରେ ଶଙ୍ଖର ଶବ୍ଦ ସୁସ୍ପଷ୍ଟ ହୋଇ ଶୁଭୁଥାଏ । ସ୍ପଷ୍ଟ ଭାବେ ମଧ୍ୟ ଶୁଭୁଥାଏ ଶତଶୃଙ୍ଗ ! ଶତଶୃଙ୍ଗ !! ଶତଶୃଙ୍ଗ !!!

ଆନନ୍ଦ ଅଧୀର କୌରବଙ୍କ ସୈନ୍ୟ ବାହିନୀ ମଧ୍ୟରେ ମନ୍ତ୍ରୀ ଶକୁନି ଚମକି ଉଠିଲେ ସେ ଶଙ୍ଖର ଶତଶୃଙ୍ଗ ଧ୍ୱନି ଶୁଣି। ତାଙ୍କର ବିମର୍ଷ ମନ ଆନନ୍ଦରେ କୁରୁଳି ଉଠିଲା । ସେ ଦୁର୍ଯ୍ୟୋଧନଙ୍କୁ ସମ୍ବୋଧନ କରି କହିଲେ, ତୁମେ କହୁଥିଲ ପରା ଭୀମ ମରିଗଲାଣି ବୋଲି, ହେଇ ଶୁଣ କୃଷ୍ଣଙ୍କ ଶଙ୍ଖ କପରି ବିଜୟ ନାଦରେ ଗର୍ଜି ଉଠୁଛି ।

ଧାନଗୋବିନ୍ଦ ହାତ ହଲାଇ କହିଲେ, ନା ନା ସେ କିଛି ନୁହେଁ । ବାହାପିଆ ପାଣ୍ଡବଙ୍କ ସଖାଙ୍କର ଏ ଗୋଟାଏ କୌଶଳ । ଭୀମ ଆଜି ଜୀବନରେ ନାହିଁ ।

ଶଙ୍ଖ କମ୍ପି ଉଠୁଛି ଶତଶୃଙ୍ଗ ଶତଶୃଙ୍ଗ ଧ୍ୱନି କରି । ସେ ଧ୍ୱନି ଭୀମଙ୍କ କର୍ଣ୍ଣରେ ପ୍ରବେଶ କରିବା ମାତ୍ରେ ତାଙ୍କ ପାଟି ଆପେ ଆପେ କହିବା ପାଇଁ ଲାଗିଲା, ଶତଶୃଙ୍ଗ ! ଶତଶୃଙ୍ଗ !! ଶତଶୃଙ୍ଗର ସ୍ମରଣରେ ସଜୀବ ହୋଇ ପଡ଼ି ରହିଥିବା ତାଙ୍କ ଦେହରେ ଶତସିଂହର ବଳ ସଂଚରିତ ହେଲା । ସେ ହୁଁକାର ନାଦରେ ଧୂଣାସନଙ୍କୁ କଅଁଳ ଭଳି ମନେକରି ତାକୁ ଓଲଟାଇ ତଳେ ପକାଇ ମାଡ଼ି ବସିଲେ ।



# ବେଣୀବନ୍ଧନ

ମାତ୍ର ଗୋଟିଏ ମୁହୂର୍ତ୍ତ । ଗୋଟିଏ ମୁହୂର୍ତ୍ତରେ ସମସ୍ତ ଗର୍ବ ଆସ୍ଫାଳନ ଧୂଳିସାତ୍ ହୋଇଗଲା । ନୀରବ ଦ୍ରଷ୍ଟାରୂପେ ରହିଥିଲେ ମଧ୍ୟ ଯାହାଙ୍କ ମୁଖରେ ଆନନ୍ଦର ଜୁଆର ଲହଡ଼ି ମାରୁଥିଲା, ସେମାନେ ନୟନ ଦଣ୍ଡକେ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଲେ । ବହୁ ବ୍ୟକ୍ତିଙ୍କ ଆଖିରୁ ଧାର ଧାର ହୋଇ ଲୋତକ ଝରିବାକୁ ଲାଗିଲା । ଆହା କାଳ କେଡ଼େ ଅବିଶ୍ୱାସୀ ! ଆଖି ପିଛୁଳାକେ ଆନନ୍ଦକୁ କି ଦୁଃଖରେ ସେ ପରିଣତ ନ କରେ ?

ଦୁଃଖରେ ମ୍ରିୟମାଣ ହୋଇ ଯାଉଥିବା ଦଳଙ୍କ ମଧ୍ୟରେ ଜଣେ ବାହାରକୁ ମୁହଁଟି ଶୁଖାଇ ଶୋକାତୁର ଭଳି ଅଭିନୟ କରି ଅନ୍ୟଙ୍କୁ ସାହାସ ଦେଉଥିଲେ ମଧ୍ୟ ସେ ଆନନ୍ଦରେ ବିଭୋର ସେ ଲୋକଟି ହେଉଛି କୌରବଙ୍କ ମାମୁଁ ଶକୁନି । ସେ ବେଳେ ବେଳେ ଊର୍ଦ୍ଧ୍ୱକୁ ଚାହିଁ ଗମ୍ଭୀର ହୋଇ ଯାଉଛନ୍ତି । ଖୁବ୍ ସମ୍ଭବତଃ ସେ ତାଙ୍କ ପିତାଙ୍କୁ ସ୍ମରଣ କରୁଛନ୍ତି । ଯୁଦ୍ଧରେ କୌରବକୁଳ ବିନାଶ, ଏହା ତାଙ୍କ ପିତାଙ୍କ ଇଚ୍ଛା ଥିଲା । ଦୁର୍ଯ୍ୟୋଧନ ଶକୁନିର ବଂଶକୁ ବନ୍ଦୀଶାଳାରେ ରଖି ଅନାହାରରେ ମାରି ଦେଇଥିଲେ ତେଣୁ ମଲା ପୂର୍ବରୁ ଶକୁନିକୁ ତାଙ୍କ ପିତା କହି ଯାଇଥିଲେ-"ସେ ମୋ ବଂଶକୁ ଯେଉଁଭଳି ମାରିଲା ସେହିଭଳି ତା ବଂଶକୁ ଯେପରି ତୁ ମରାଇ ଦେବୁ" ।

ଏକଦା ଶ୍ରୀକୃଷ୍ଣ ମହାଭାରତ ଯୁଦ୍ଧ ନ ହେବା ପାଇଁ ମତ ଦେଲେ । ମାତ୍ର ଶକୁନି ତାଙ୍କୁ ଚୁପି ଚୁପି କହିଲେ, ଭଗବାନ ! ଏହାଦ୍ୱାରା କାହାରି ଶୁଭ ହେବ ନାହିଁ । ଆପଣ ଦୁଷ୍ଟ ସଂହାର ପାଇଁ ଆସିଛନ୍ତି । ଯୁଦ୍ଧ ଯଦି ନ ହୁଏ, ତେବେ ଦୁଷ୍ଟ ସଂହାର ହେବ କିପରି ? ଏ ଯାହା ହେବାକୁ ଯାଉଛି ଏହାତ ଗୋଟାଏ ଯୁଦ୍ଧ ନୁହେଁ, ଏହା ଗୋଟାଏ ପ୍ରଳୟ । ଯେତେବେଳେ ସୃଷ୍ଟି ଚର୍ଦ୍ଧାରେ ଫାଟି ପଡ଼େ, ସେତେବେଳେ ଆପଣ ପ୍ରଳୟ ଆଣି ପୁରାତନ ସୃଷ୍ଟିକୁ

ଧ୍ୱଂସ କରି ନୂତନ ସୃଷ୍ଟି କରିଥାନ୍ତି । ସେମାନେ ମୋର ଭଉଣୀ ଦ୍ରୌପଦୀ ନା କାହିଁକି ତାଙ୍କର କାମ କରି ସମାଜ ବିରୋଧୀ ନୁହେଁ ? କେମିତି ଯୁଦ୍ଧରେ କରି ସେମାନଙ୍କର ପତନ ହୋଇ ପାରିବ ? ସେହିଭଳି ସମଗ୍ର ଭାରତରେ କିଛି ଅସାମାଜିକ ଲୋକ ଅଛନ୍ତି । ଏହି ଗୋଟିଏ ଯୁଦ୍ଧରେ ସେହି ଲୋକଙ୍କର ପତନ ଘଟିବ ।

ଶଙ୍କୁନିର କଥା ଶୁଣି ଭଗବାନ ଶ୍ରୀକୃଷ୍ଣ ଖାଲି ହସିଥିଲେ । ସେହି ହସର ଅର୍ଥ କଣ ତାହା ଜାଣିଥିଲେ ସ୍ୱୟଂ ସେ ଆଉ ଶଙ୍କୁନି ।

ଯୁଦ୍ଧକ୍ଷେତ୍ର ପୂର୍ବ ପରି ନୀରବ । ଦୁଇ ମଲ୍ଲଙ୍କର ଲଢ଼େଇ । ଧୃଷ୍ଟ ସେନ ଭୀମଙ୍କୁ ତଳେ ପକାଇ ତାଙ୍କ ଉପରେ ବାହାସ୍ଫୋଟ ମାରୁଥିଲେ, ବର୍ତ୍ତମାନ ଧୃଷ୍ଟସେନଙ୍କୁ ତଳେ ପକାଇ ଭୀମ ତାଙ୍କୁ ମାଡ଼ି ବସିଛନ୍ତି । ହୁଏତ ଆଉ ଟିକକ ପରେ ଭୀମଙ୍କୁ ମଧ୍ୟ ପୁଣି ଧୃଷ୍ଟସେନ ଓଲଟାଇ ଦେଇ ପାରନ୍ତି । ଯୁଦ୍ଧ କଥା । ଦୁହେଁ ଅର୍ଜନ କରି ! ଦୁହିଁଙ୍କର ମୂର୍ତ୍ତି ମଧ୍ୟ ସମାନ ଏହିଭଳି କଥା କହୁ ଯୋଦ୍ଧା ଭାବୁଥିଲା ବେଳେ ଭୀମ କୃତାନ୍ତକ ରୂପ ଧରି ଗର୍ଜନ କରି ଉଠିଲେ ।

ଭୀମ ମାଡ଼ି ବସିଛନ୍ତି ଧୃଷ୍ଟସେନଙ୍କୁ । ଭୀମଙ୍କର ବାମକର ରହିଛି ଧୃଷ୍ଟସେନଙ୍କ ତଣ୍ଟିରେ । ଦକ୍ଷିଣକର ଶୂନ୍ୟକୁ ଟେକି ବଜ୍ରମୁଷ୍ଟି କରି ଧୃଷ୍ଟସେନଙ୍କ ମୁହଁରେ ମାରିବାକୁ ଉଦ୍ୟତ । ସେହିଭଳି ଗୋଟିଏ ପାଦ ତାଙ୍କର ଧୃଷ୍ଟସେନଙ୍କ କଟି ମେଖଳାରେ ତ ଅପରପାଦ ତାଙ୍କ ବକ୍ଷ ସ୍ଥଳରେ ଧୃଷ୍ଟସେନଙ୍କ ମୁହଁରେ ଏକ ପରେ ଏକ ମୁଷ୍ଟିଘାତ କରି ବାହାସ୍ଫୋଟ ମାରୁଥାନ୍ତି ଭୀମ । କ୍ଷଣକ ମଧ୍ୟରେ ଉଠିପଡ଼ି ପୁଣି ତାଙ୍କ ଉପରେ ବସି ପଡ଼ନ୍ତି ସେ । ଭୀମ କ୍ରୋଧରେ ଫୁଲି ଏଭଳି ଗରୁ ହୋଇ ଯାଇଥାନ୍ତି ଯେ, ଧୃଷ୍ଟସେନ ଟିକିଏ ହେଲେ ହଲଚଲ ହୋଇ ପାରୁ ନଥାନ୍ତି । ବେଳେ ବେଳେ ଧୃଷ୍ଟସେନଙ୍କ ବକ୍ଷରେ ସେ ଏଭଳି ଜୋରରେ ପାଦ ଚିପି ଦେଉଥାନ୍ତି, ଯଦ୍ଦ୍ୱାରା ଧୃଷ୍ଟସେନ ଝଲକାଏ ଲେଖାଏ ରକ୍ତ ବାନ୍ତି କରି ପକାଉଥାନ୍ତି ତାହା ଲକ୍ଷ୍ୟ କରି କୌରବ ବାହିନୀ ହତଭମ୍ବ । ପାଣ୍ଡବବାହିନୀ ଧୃଷ୍ଟସେନର ଏ ଅବସ୍ଥା ଦେଖି ଆନନ୍ଦରେ ଉତ୍ଫୁଲ୍ଲ ହୋଇ 'ମଲ୍ଲ' 'ମଲ୍ଲ' ବୋଲି ପାଟିକରି ଉଠୁଥାଆନ୍ତି ।

ଖଣ୍ଡମୂର୍ତ୍ତି ଧରିଛନ୍ତି ଭୀମ । ସେ ବଜ୍ର ପାଟିରେ ହାକ କହିଲେ, ଅରେ ରେ ଦୁଃଶାସନ ପ୍ରଜାପତିଙ୍କ ନିର୍ମାଣ ତୁ ମୋ ହାତରେ ମରିବୁ । ଗତକାଲି ଊରୁଣ ପଳାଇଲୁ । ଆଜ ସେତେବେଳେ ମରିବାର ଯୋଗ ଅଛି, ସେତେବେଳେ କାଳି ତୁ କୁଆଡେ ମୋ ହାବୁଡ଼େ ଧଡ଼ିବୁ । ଦଣ୍ଡେ ନିମିଷେ ଯଦି କାହାର ଆୟୁ ଥାଏ, ତାକୁ କେହି ମାରି ପାରିବେ ନାହିଁ । ତେଣୁ କାଲି ତୁ ମୋର ହାବୁଡ଼େ ପଡ଼ିଲୁ ନାହିଁ । ମାତ୍ର ଆଜ ତୁକେହି ତୋତେ ମୋ ହାବୁଡ଼ରୁ ରଖି ପାରିବେ ନାହିଁ । ଆଜ ନିଶ୍ଚୟ ଦ୍ରୌପଦୀର ଦୁଃଖ ଦୂର ହେବ !

ଭୀମ ବେଳୁ ବେଳ ଭୟଙ୍କର ମୂର୍ତ୍ତି ଧରିଲେ । ସେ ଶୂନ୍ୟକୁ ଚାହିଁ କହିଲେ, "ଆକାଶରେ ରହି ବୃନ୍ଦାଅର୍କ ଏହି ସମର ଦେଖୁଛନ୍ତି । ଯଦି ତାଙ୍କଠାରେ ଶକ୍ତିଥାଏ ତେବେ ମୋ ହାତରୁ ତୋତେ ରକ୍ଷା କରନ୍ତୁ । ଅସ୍କନ୍ଦରେ ଆମରଧିନାଥ ବିଜୟେ କରିଛନ୍ତି, ଯଦି ସେହି ଇନ୍ଦ୍ରଙ୍କର ଶକ୍ତି ଥାଏ, ତେବେ ସେ ଆସି ଏଠାରୁ ଧୁଃଶାସନକୁ ମୋ ହାତରୁ ରକ୍ଷା କରନ୍ତୁ । ହେ ଜନ୍ତୁ ନାଶକ, ତୁମେ ପରା କୃତାନ୍ତକ ! ତୁମର ଶକ୍ତି ଅଛି ନା ଧୁଃଶାସନକୁ ରକ୍ଷାକରିବାକୁ ।"

ସମସ୍ତେ ନୀରବ ! ଶୂନ୍ୟ, ମହାଶୂନ୍ୟ ମଧ୍ୟ ନୀରବ ନିଶ୍ଚଳ !!

ପୁନର୍ବାର ଗର୍ଜିଉଠି ଭୀମ କହିଲ, "ହେ ଚନ୍ଦ୍ର, ସୂର୍ଯ୍ୟ, ବ୍ରହ୍ମ, ରୁଦ୍ରାଦି ଦେବତା ! ତୁମେ ସମସ୍ତେ ନିଜ ନିଜର ଅସ୍ତ୍ର ଧରି ଏ ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହୋଇ ଯଦି ଶକ୍ତିଥାଏ ତେବେ ଏ ପାମର ଧୁଃଶାସନକୁ ରକ୍ଷାକର" !

କାଳଚକ୍ର ଭଳି ଭୀମଙ୍କର ଆଖି ଦୁଇଟି ଘୂରି ବୁଲୁଛି । ସେ ଅପାର ପ୍ରତିଜ୍ଞା କରି ଧୁଃଶାସନକୁ ରକ୍ଷା କରିବା ପାଇଁ ଥରକୁ ଥର ଆହ୍ୱାନ କରୁଥାନ୍ତି । ତାଙ୍କର ସେ ଭୟଙ୍କର ମୂର୍ତ୍ତି ଦେଖି ୫ ଭୁବନ ଭୟରେ କମ୍ପି ଉଠିଲେ । ସାମାନ୍ୟ ଅପେକ୍ଷା କରି ସେ ବିକଟାଳ ଭାବରେ ହସ ହସି କହିଲେ, ଆରେ ଧୁଃଶାସନ ! କେହି ରଖି ନପାରିଲେ । ଅଛା ଦେଖେଁ ପାତାଳ ପୁରରେ କେହି ତୋତେ ରକ୍ଷା କରିବାକୁ ଅଛନ୍ତି ନା ନାହିଁ ?

ପାତାଳ ପୁରକୁ କୋପଦୃଷ୍ଟି **ଦେଇ** ଭୀମସେନ ଉଚ୍ଚସ୍ୱରରେ କହିଲେ, "ଆହେ ଶଙ୍ଖ, ଶ୍ୱେତ ପଦ୍ମ, କର୍କୋଟକ, କୁଳିକ, ବାସୁକି, ଅନନ୍ତ, ତକ୍ଷକ ! ତୁମ୍ଭେମାନେ ଏ ପୃଥ୍ୱୀକୁ ଶିରରେ ବୋହିଅଛ । ତୁମ୍ଭମାନଙ୍କର ଯଦି ଶକ୍ତି ଥାଏ ତେବେ ଦୁଃଶାସନକୁ ମୋ କବଳରୁ ରକ୍ଷା କର" ।

ମୂରଚ କରି ଭୀମସେନ ମହାଦେବଙ୍କୁ ଗୁହାରି କହିବା ଦେଖି ନାଗଲୋକ ଉପୁରେ କୌଣସି ଉତ୍ତର ଦେଲେ ନାହିଁ । ତାର ବୃକୋଦର ରୂପ ଦେଖି କିଏ ବା ତା ବିରୁଦ୍ଧରେ ଯୁକ୍ତିତ ବଡ଼କଥା ପଦୁଟିଏ ବାକ୍ୟ ଉଚ୍ଚାରଣ କରିବ ?

ଅଷ୍ଟକୁଳ ନାଗଙ୍କୁ ନୀରବତା ଦେଖି ବୀର ଭୀମ କୌରବ ଥାଟ ଆଡ଼କୁ ଦୃଷ୍ଟି ନିକ୍ଷେପ କଲେ । ଭୀମଙ୍କର ସେହି ଉପୁଙ୍କର ଚକ୍ଷୁଦୁଇଟିକୁ ଲକ୍ଷ୍ୟକରି କୌରବ ସେନା କିଛିଦୂର ପଛେଇ ଗଲେ । ଭୀମ ଡାକଦେଲେ "ଆରେ ରେ କୌରବେ, ହେ କର୍ଣ୍ଣ, ଶଲ୍ୟ, ଶକୁନି ! ହେ ମାନଗୋବିନ୍ଦ ! ତୁମେ ସବୁ ସମଦଣ୍ଡ ଧରି ଭାରତ ଯୁଦ୍ଧରେ ଉପସ୍ଥିତ । ଦୁଃଶାସନର ବାହୁତକାକୁ ତୁମ୍ଭେ-ମାନେ ସଖା ଓ ସୋଦର ! ତୁମ୍ଭମାନଙ୍କ ଭଳି ରଥୀ ଥାଉଁ ଥାଉଁ ଦୁଃଶାସନ ନିରେଖ ହେଉଛି । ହେ କର୍ଣ୍ଣ, ତୁମ୍ଭେ ସବୁ ଭାରଥ ଯୁଦ୍ଧରେ ଭାରେଇ ମଲ୍ଲ । ହେ ରଥ୍ୟଗୁରୁ ଶଲ୍ୟ ତୁମ୍ଭେସବୁ ଛଟୀ ପଣରେ କୃତାନ୍ତକ ଭଳି । ଆଜିପର୍ଯ୍ୟନ୍ତ ମାନଗୋବିନ୍ଦକୁ ଭର୍ତ୍ତି ଖାଇ ବୁଲିଛ । ଆଜି ତାର ଏ ଅପଚୟ ବେଳରେ କେହି ସପକ୍ଷ ହେଉନାହିଁ ? ଅସମୟ ବେଳକୁ ଯଦି କେହି ସାହା ଭରସା ନ ହୁଅ, ତେବେ ସଭାରେ ବସି ବଡ ବଡ଼ କଥା କୁହ କାହିଁକି ? କାହିଁକି ତୁମେ ନିଜକୁ ବଡ ବୀର ବୋଲି ବଙ୍ଗାପିତ କରୁଛ ?"

ନୀରବ କୌରବ ଥାଟ । ଭାଇ ଦୁର୍ଯ୍ୟୋଧନ, କର୍ଣ୍ଣ, ଶଲ୍ୟ ସମସ୍ତେ ହେଟ ମୁଖରେ ରହିଲେ । ଅବସ୍ଥା ଲକ୍ଷ୍ୟକରି ମହାବୀର ଭୀମ କହିଲେ, "ଆରେ ଦୁଃଶାସନ କେହି ତୋତେ ରକ୍ଷା କରିବାକୁ ସାହସ କରୁନାହାନ୍ତି । ତଥାପି ତୋ ପାଇଁ ମୁଁ ଶେଷ ଚେଷ୍ଟା କରୁଛି ।"

ଭୀମ ଲେଉଟି ଚାହିଁଲେ ନିଜ ଥାଟକୁ । ତାଙ୍କ ଦୃଷ୍ଟିରେ ପଡ଼ିଲେ ଜ୍ୟେଷ୍ଠ୍ର ଯୁଧିଷ୍ଠି । ତାଙ୍କର ପାଖରେ ଛିଡ଼ା ହୋଇଥାନ୍ତି ଧୃଷ୍ଟଦ୍ୟୁମ୍ନ ।

ଅର୍ଜୁନ ଶ୍ରୀକୃଷ୍ଣଙ୍କ କୋଳରେ ବସିଥାନ୍ତି । ଶ୍ରୀକୃଷ୍ଣ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେଲେ ଭୀମଙ୍କ ନରସିଂହ ମୂର୍ତ୍ତିକୁ । ଅର୍ଜୁନ ତାଙ୍କ ଜ୍ୟେଷ୍ଠ ସହୋଦର ଭୀମଙ୍କର ସେହି ଭୟଙ୍କର ମୂର୍ତ୍ତିକୁ ଲକ୍ଷ୍ୟକରି ହତବାକ୍ ହୋଇଗଲେ । ଭୟ ବିସ୍ମୟରେ ତାଙ୍କ ମୁଖରୁ କୌଣସି ବାକ୍ୟ ସ୍ଫୁରଣ ହେଲାନାହିଁ । ସତେ ଭୀମଙ୍କର ଏ-କି ବିକରାଳ ମୁଖ, ଏ-କି ବିକଟ ଦୃଷ୍ଟି । ମସ୍ତକ ଲାଗିଛି ତାର କାହିଁ କେତେ ଊର୍ଦ୍ଧ୍ୱରେ, ଶୂନ୍ୟରେ-ମହାଶୂନ୍ୟରେ । କଟ ମଟ ରଟ ରଟ ଭୀମଙ୍କର ସେହି ଭୀଷଣ ଦନ୍ତପଂକ୍ତିର ଆସ୍ଫାଳନ ଭୟଭୀତ କରି ତୋଳିଲା ଅର୍ଜୁନଙ୍କୁ । ସେ ମଥା ନତ କରି ପ୍ରଣତି ଜଣାଇଲେ । ତାପରେ ରଥ ଉପରେ ଥୁଆ ହୋଇଥିବା ତାଙ୍କର ଦେବଦତ୍ତ ଶଙ୍ଖକୁ ମୁହଁରେ ଲଗାଇ ଶଙ୍ଖ ଧ୍ୱନିରେ ଭୀମଙ୍କ ନରସିଂହ ରୂପର ଜୟ ଜୟକାର ଗଗନ ପବନ ନିନାଦିତ କରି ପ୍ରଚାର କଲେ । ହଁ ହଁ ହୋଇ ହସି ଉଠିଲେ ଭୀମସେନ । ହସି ହସି କହିଲେ, "ଆରେ ଦୁଃଶାସନ, ଏ ବିଶ୍ୱରେ ତୋତେ ଆଜି ମୋ କବଳରୁ କେହି ରଖିବାକୁ ନାହାନ୍ତି । ବର୍ତ୍ତମାନ ତୋର ଏ ଭୟଙ୍କର ମୃତ୍ୟୁ ସମୟରେ ଇଷ୍ଟଦେବ ସ୍ମରଣ କରିବା ଛଡ଼ା ଅନ୍ୟ କିଛି ପନ୍ଥା ନାହିଁ ।

ନିଜ ଥାଟ ଆଡକୁ ବୁଲିଲେ ନରସିଂହ ମୂର୍ତ୍ତିଧାରୀ ଭୀମ । ତାଙ୍କ ଦୃଷ୍ଟି ପଡ଼ିଲା ସହଦେବଙ୍କ ଉପରେ । ସେ ଧୀର ନମ୍ର ସ୍ୱରରେ କହିଲେ, "ବାବୁ ! ଶୀଘ୍ର ଯାଇ ଦ୍ରୌପଦୀଙ୍କୁ ଏଠାକୁ ନେଇ ଆସ । ସେଦିନ ଏ ଚଣ୍ଡାଳର ହାତ ଯେଉଁ ନମସ୍ୟ କେଶକୁ ଧାରଣ କରିଥିଲା, ତାହା ଏ ପର୍ଯ୍ୟନ୍ତ ସେହିଭଳି ମୁକୁଳିତ ଅଛି । ସେହି କେଶଯାକ ଆଜି ଏହାରି ରକ୍ତରେ ସିକ୍ତ ହୋଇ ବନ୍ଧାଯିବ ।"

ମହାମନ୍ତ୍ରୀ ସହଦେବ ଭୀମ ଠାକୁରଙ୍କ ଆଜ୍ଞା ପାଇ ପୁଷ୍ପକ ବିମାନ ଆରୋହି ବାରୁଣାବନ୍ତରେ ଉପସ୍ଥିତ ହେଲେ । ଦ୍ରୌପଦୀ ଦୁଲ୍ଲଣୀ ବ୍ରତକ ପଛୀ ଭଳି ଅପେକ୍ଷା କରି ବସିଛନ୍ତି । ଗତକାଲି ଅଠର ଶାଇ ଭାଇ ପଡ଼ିଥିଲେ ଭୀମଙ୍କ କବଳରେ । ଆଜି ନିଶ୍ଚେ ଦୁଃଶାସନର ପାଳି । ବହୁଦିନ ପରେ ତୃପ୍ତ

ହେବ ତାଙ୍କ ମର୍ମସ୍ଥାନ । ମୁକୁଳିତ କେଶଗୁଚ୍ଛ ପାଶବଦ୍ଧ ହେବ ଧୃଷ୍ଣାର ସତ୍ୟ ରକ୍ତରେ ।

ଏକାକୀ ସହଦେବଙ୍କୁ ଦେଖି ଦ୍ରୋପଦୀ ଶଙ୍କିତ ହୋଇପଡ଼ିଲେ । କେଉଁ କଣ—ଆଜି କେହି ନାହାନ୍ତି ଏକା ଏକ ସହଦେବ କାହିଁକି । ସେ ଯାହା ଭାବୁଥିଲେ ତାର ବିପରୀତ ଫଳ ହେଲା କି ? ତାହା ତ କେବେ ସମ୍ଭବ ନୁହେଁ । ଆଜି କିଏ ଏ ବିଶ୍ୱରେ କେହି ଅଛି ଯେ କି ତାଙ୍କ ଇଚ୍ଛାକୁ ବିଫଳ କାମ କରି ପାରିବ । କିଏ ସେ, କାହାର ଏତେ ଶକ୍ତି ?

ସହଦେବଙ୍କ ରଥ ତାଙ୍କ ନିକଟବର୍ତ୍ତୀ ହେଲା । ତରହସିତ ସହଦେବଙ୍କ ମୁଖରୁହିଁ ଠିକ ପୂର୍ବରୁ ଯେଉଁ ଆଶଙ୍କା ତାଙ୍କୁ କବଳିତ କରିବାକୁ ବସିଥିଲା । ତାହା ଦୂରେଇ ଗଲା ।

ହସ ହସ ମୁହଁରେ ସହଦେବ ଜଣାଇଲେ, "ଆସ ଆସ ଦେବୀ ! ଏତେ ଦିନକରେ ତୁମ ମନସ୍କାମ ପୂର୍ଣ୍ଣ ହେଲା । ଚଉଦବର୍ଷ ପାଞ୍ଚାଳୀ ଦିନ ଧରି ଯେଉଁ କେଶକୁ ତୁମେ ମୁକୁଳା କରି ରଖିଛ, ତାହା ଆଜି ଧୃଷ୍ଣାସନ ରକ୍ତରେ ପଖାଳ ହୋଇ ପାଶବଦ୍ଧ ହେବ । ଏତେକାଳ ପରେ ଭୀମଠାକୁରଙ୍କ କବଳରେ ପଡ଼ିଛି ଧୃଷ୍ଣା । ତାର ଅନ୍ତିମ କାଳ ଉପସ୍ଥିତ । କେବଳ ତୁମ ପହଞ୍ଚିବାକୁ ଯାହା ଅପେକ୍ଷା ।"

ସଙ୍ଗେ ସଙ୍ଗେ ଦ୍ରୋପଦୀ ସହଦେବଙ୍କ ସହିତ ପୁଷ୍ପକ ବିମାନରେ ବିଜେ କଲେ । ବିମାନ ପବନ ବେଗରେ ଧାଇଁ ଚାଲିଲା କୁରୁକ୍ଷେତ୍ର ରଣାଙ୍ଗନକୁ ! ବାଟରେ ଦ୍ରୋପଦୀ ଜାଣିବାକୁ ଚାହିଁଲେ ସେଦିନ ଯୁଦ୍ଧର ସମାଚାର । ସଂକ୍ଷିପ୍ତ ଭାବେ ସହଦେବ ତାଙ୍କୁ ସେଦିନ ଯୁଦ୍ଧର ବିବରଣ କହୁ କହୁ ରଥ ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହେଲା । କୁରୁକ୍ଷେତ୍ର ଯୁଦ୍ଧମଣ୍ଡଳକୁ ଥରେ ଦ୍ରୋପଦୀ ଲକ୍ଷ୍ୟ କରି, କ୍ଷେତ୍ରର ମଧ୍ୟ ଭାଗରେ ଧୃଷ୍ଣାସନକୁ ମାଡ଼ି ବସିଥିବା ଭୀମଙ୍କୁ ଦେଖିବାକୁ ପାଇଲେ ।

ଓଃ, ଏ କି ଭୟଙ୍କର ମୂର୍ତ୍ତି ଭୀମଙ୍କର ! ବୃକୋଦର ମୂର୍ତ୍ତି ଭୀମଙ୍କର ଦେଖି ଦ୍ରୌପଦୀଙ୍କ ମନରେ ସାମାନ୍ୟ ଭୟ ସଞ୍ଚାର ହେଲା । ତା ପରେ ତାଙ୍କ

ଅଧରଟରେ ଖେଳିଗଲା ମନ୍ଦହାସ୍ୟ । ଯାହା ହେଉନା କାହିଁକି ଏହି ଅବସ୍ଥାରେ ଭୀମ ହିଁ ତାଙ୍କର ସ୍ୱାମୀ ।

ରଣଭୂମିରେ ରଥ ରହିବା ଷଣି ରଥରୁ ଓହ୍ଲାଇ ଦ୍ରୋପଦୀ କୁରୁକ୍ଷେତ୍ରର ଟାଙ୍ଗର ଭୂମିରେ ପାଦ ଦେଇ ଓଃ—ଏ କଣ ସେ ଦେଖୁଛନ୍ତି । ନେତାଳ ଉଳ୍ଚର୍ଗ ଧୃଶାସନର କାୟା । ତା ଉପରେ ସାତତାଳ ଉଚ୍ଚ ହୋଇ ଭୀମ ତାକୁ ମାଡ଼ି ବସିଛନ୍ତି । ଭୀମଙ୍କର ବିରାଟ ରୂପ ଦର୍ଶନ କରି ଦ୍ରୋପଦୀ ଭାବୁଛନ୍ତି

ଏ କଣ ଆଉ ସେହି ଭୀମ ନୁହେଁ କି ?

ଏତିକିବେଳେ ଭୀମ ଡାକିଦେଲେ, "ଆରେ ସହଦେବ ମୋ ପାଖକୁ ପାଞ୍ଚାଳୀଙ୍କୁ ନେଇ ଆସ । ସେ ଥରେ ତ ଲକ୍ଷ୍ୟ କରି ଦେଖୁ ଏ ହେଉ ମୋର ଗୁଣବନ୍ତ ଭାଇ ଧୃତବ୍ରଷ୍ଟି କି ନୁହନ୍ତ ।"

ମହାମନ୍ତ୍ରୀ ସହଦେବ ଦ୍ରୋପଦୀଙ୍କ ହାତ ଧରି ଭୀମଙ୍କ ପାଖକୁ ନେଇ-ଗଲେ । ଦ୍ରୋପଦୀ ଭୀମଙ୍କ ପାଖରେ ପହଞ୍ଚିବା ମାତ୍ରେ, ଭୀମ ଥରେ ଧୃଶାସନ ଆଡକୁ ଗ୍ରୀବା ଦେଇ ଏକ ବିକଟାଳ ହସରେ ରଣାଙ୍ଗନକୁ ପୂର୍ବଠାରୁ ଅଧିକ ଉପ୍ତଭୀତ କରିଦେଲେ । ସେହି ବିକଟାଳ ହସ ତାଙ୍କର ଶେଷ ହେଉ ହେଉ ସେ କହିବାକୁ ଆରମ୍ଭ କଲେ,"ତୁମେ ଠିକଏତ ଲକ୍ଷ୍ୟ କରି ଚିହ୍ନିଲ, କପଟପାଶା ବେଳର ଏ ସେହି ଧୃଶାସନ ନା ଆଉ କିଏ ? ଯାହା ପାଇଁ ତୁମେ ଏତେକାଳ ଯାଏ କେଶ ମୁକୁଳିତ କରି ରଖିଛ ? —ଆରେ ଧୃଶାସନ ତୁ ଠିକଏ ଚିହ୍ନି ପାରିଲୁ ନାହିଁ ପାଞ୍ଚାଳୀକୁ । ଯେଉଁ ପାଞ୍ଚାଳୀ ଯଜ୍ଞ କୁଣ୍ଡରୁ ଉତ୍ପନ୍ନ ହୋଇଥିଲେ, ତୁ ପାପିଷ୍ଠ ତୋର ପାପ ହାତରେ ତାଙ୍କର ସେ ଦିବ୍ୟ କେଶଗୁଚ୍ଛକୁ ଧାରଣ କଲୁ କାହିଁକି ? ଆଜ ତୋର ସେହି ହସ୍ତର ରକ୍ତରେ ତାଙ୍କର ସେହି କେଶ ଧୁଆଯିବ । ସେଦିନ ସଭା ମଧ୍ୟରେ ସମସ୍ତଙ୍କ ସମ୍ମୁଖରେ ତୁ ଯେଉଁଭଳି ବିବସନ କରୁଥିଲୁ, ସେହିଭଳି କୁରୁକ୍ଷେତ୍ର ସମର ପ୍ରାଙ୍ଗଣରେ ସମସ୍ତ ଯୋଦ୍ଧାଙ୍କ ସମ୍ମୁଖରେ ତୋ ରକ୍ତରେ ତାଙ୍କ ମୁକୁଳିତ କେଶ ବନ୍ଧାଯିବ । ରେ ରେ କାର କରି ଉଠିଲେ ବୃକୋଦର । ଏତିକିବେଳେ ଦ୍ରୋପଦୀ କହିଲେ, "ସ୍ୱାମୀ, ସେଦିନ ଏହାକୁ ମୁଁ ଭୟ କରି ଦାଣ୍ଡରେ ଚରଣ ଧରିଲି ଅନ୍ତଃପୁର ମଧ୍ୟରେ । ପଦ ତଳେ ପଡ଼ି କହିଥିଲି ମୋତେ ତୁମେ ସ୍ପର୍ଶ କରନାହିଁ କାନ୍ଦୁ

ଏ ମୋର କୌଣସି କଥା ଶୁଣିଲ ନାହିଁ । ଅନ୍ତଃପୁର ମଧ୍ୟରେ ଧସେଇ ପଶି ମୋର କେଶ ଆକର୍ଷଣ କରି ଶୂନ୍ୟେ ଶୂନ୍ୟେ ମୋତେ ରାଜସଭାକୁ ଟେକି ନେଲା । ସେ ନେଲାବେଳେ ମୋର ପାଦ ଭୂମିକୁ ସ୍ପର୍ଶ କରୁ ନଥିଲା । ପୁଣି ସଭାରେ ଗୁରୁଜନମାନଙ୍କ ସମ୍ମୁଖରେ ମୋତେ ଉଲଗ୍ନ କଲା ।

ଦ୍ରୋପଦୀଙ୍କ କଥା ଶୁଣୁ ଶୁଣୁ ଗର୍ଜି ଉଠିଲେ ଭୀମ । ସେ ଗର୍ଜନ ଜଣେ ମଣିଷର ନୁହେଁ । ସତେ ଯେପରି ଶହେଟା ସିଂହ ଏକ ସମୟରେ ଗର୍ଜନ କରୁଛନ୍ତି । ଅଧରେ ଦନ୍ତ ଚାପି, ସେ ଆକ୍ରୋଶି ଧଇଲେ ଧୃଶାସନଙ୍କ ଦକ୍ଷ ଭୁଜକୁ । ଧୃଶାସନଙ୍କ ଦକ୍ଷ ପଞ୍ଜରରେ ପଦଦ୍ୱାରା ଏପରି ଏକ ନିର୍ଘାତ ପ୍ରହାର କଲେ ଯେ, ତାହା ଫଳରେ ପଞ୍ଜରରୁ ହାଡଟା ଖସିଗଲା । ତାପରେ ହୁଁ କାର ନାଦ କରି ଟାଣି ଆଣିଲେ ଦେହରୁ ପୃଥକ କରି ଦକ୍ଷ ଭୁଜ । ଭୁଜ ଉପାଡ଼ିଲା ବେଳେ ଧୃଶାସନ ଏକ ଭୟଙ୍କର ଚିତ୍କାର କଲେ । ସେହି ଚିତ୍କାର ସହିତ ମିଳିତ ହେଲା ଭୁଜ ଉତ୍ପାଟନ ର ମହା ଶବ୍ଦ ।

ଭୁଜରୁ ଝର ଝର ହୋଇ ବହି ପଡ଼ିଲା ରକ୍ତର ଧାର । ସଙ୍ଗେ ସଙ୍ଗେ ଦ୍ରୋପଦୀଙ୍କ ମୁକୁଳିତ କେଶ ଉପରେ ଟେକି ଧରିଲେ ସେ ହାତକୁ । ଝରଣା ଭଳି ରକ୍ତ ନିଗିଡ଼ି ପଡ଼ିଲା ଦ୍ରୋପଦୀଙ୍କ ଶିରରେ । ସଙ୍ଗେ ସଙ୍ଗେ କୃଷ୍ଣ କେଶ ଗୁଚ୍ଛ ରକ୍ତ ରଙ୍ଗରେ ରଞ୍ଜିତ ହୋଇଗଲା । ତାପରେ ସେ ହାତକୁ ବୁଲାଇ ବୁଲାଇ ମହାବୀର ଭୀମ ଫୋପାଡ଼ି ଦେଲେ ଶୂନ୍ୟକୁ । ଗଗନର ବହୁ ଉର୍ଦ୍ଧ୍ୱକୁ ହାତଟି ଉଠିଯାଇ ତଳକୁ ଫେରି ଆସିଲା ବେଳେ କେଉଁଠି ଏକ ଶେଣ ପକ୍ଷୀ (ପକ୍ଷୀ) ଥିଲା । ସେ ସଙ୍ଗେ ସଙ୍ଗେ ଉଡ଼ି ଆସି ଶୂନ୍ୟରେ ତାକୁ ତା ଦୁଇ ଗୋଡରେ ଭିଡ଼ି ଧରିଲା । ଶୂନ୍ୟରୁ ଝର ଝର ହୋଇ ବର୍ଷିବାକୁ ଲାଗିଲା ସେହି ହାତରୁ ରକ୍ତ ଧାର । ତାହା ଦ୍ରୋପଦୀଙ୍କ ଶିରରେ ପଡ଼ି ନିଗିଡ଼ି ଆସିଲା ନାକ ଭିତର ଦେଇ ପାଟି ମଧ୍ୟକୁ । ଆସ୍ୱାଦନ କଲେ ଦେବୀ ଦ୍ରୋପଦୀ ଧୃଶାସନର ସେହି ରକ୍ତ । ତତ୍ପରେ ଦକ୍ଷ ହସ୍ତ ଭଳି ବାମ ଭୁଜକୁ ମଧ୍ୟ ଭୀମ ଧୃଶାସନଙ୍କ ଦେହରୁ ଉପାଡ଼ି ଶୂନ୍ୟକୁ ଫିଙ୍ଗି ଦେଲେ । ତାହାକୁ ମଧ୍ୟ ଶେଣ ପକ୍ଷୀ ଧରି ନେଲା । ଦ୍ରୋପଦୀଙ୍କ ମସ୍ତକରେ ମାଠିଆରେ ଅଜାଡ଼ିଲା ଭଳି ରକ୍ତ ଶୂନ୍ୟରୁ ଝରି ପଡ଼ିଲା । ସେହି ରକ୍ତରୁ ଭୈରବୀଙ୍କ ଭଳି କିଛି ମଧ୍ୟ ପାନ କଲେ ନାସିକା ରନ୍ଧ୍ର ଦେଇ ଦ୍ରୋପଦୀ । ❊

# ଗୋପାଳ ଶ୍ରୀ

କାର୍ତ୍ତିବାସ ଚିତ୍କାର କରି ଉଠିଲା, "ସିଂହ, ସିଂହ, ମାର...ମା...ର । ନିଦରେ ଶୋଇଥିଲା କାର୍ତ୍ତିକ । କାର୍ତ୍ତିବାସର ଚିତ୍କାରରେ ହଠାତ୍ ନିଦ ଭାଙ୍ଗି ଗଲା ତା'ର । ହାତ ପାଖରେ ଝୁଲୁଥିବା ଏକ କରବାଳକୁ ଟାଣି ଆଣିଲା ସେ । ତା'ପରେ ଅତି ସତର୍କତାର ସହିତ ବାହାରକୁ ବାହାରି ପଡ଼ିଲା ।

ବାହାରଟା କଟିକଟା ଅନ୍ଧାର । ଆକାଶର ନକ୍ଷତ୍ରମାନଙ୍କ କିରଣରେ ଯେତିକି ଆଲୋକିତ ହେବାର କଥା, ସେତିକି ଆଲୋକ ବାହାରେ । ତଥାପି ସେହି ଅନ୍ଧକାରରେ ଧୀର ପଦକ୍ଷେପରେ ଚାରିଆଡ଼କୁ ଦୃଷ୍ଟି ନିକ୍ଷେପକରି ସେ ଆଗେଇ ଚାଲିଲା ।

ସିଂହ ! ହଁ...ହଁ..., ସିଂହ । ଏକା ଭାଇ କାର୍ତ୍ତିବାସ ନୁହେଁ, ସେ ମଧ୍ୟ ଦେଖିଛି ସିଂହକୁ । ତେବେ ସେ ଦେଖିବା କେତେଦୂର ଠିକ୍, ତା'ର ପ୍ରମାଣ ସେ ଦେଇପାରିବ ନାହିଁ ।

ସତର୍କ ଭାବେ ସେ ଅନାଇଲା ଏଣେତେଣେ । ନିଃଶ୍ୱାସକୁ ରୋଧ କରି ସେ ସିଂହର ପଦଶବ୍ଦ ଶୁଣିବାକୁ ଚେଷ୍ଟା କଲା । ନା...ତ...! ସିଂହର କୌଣସି ଚିହ୍ନ ନାହିଁ !!

ତାହାହେଲେ ସେ କ'ଣ ପ୍ରକୃତସିଂହକୁ ଦେଖି ନାହିଁ—ଶୋଇ ଶୋଇ ସ୍ୱପ୍ନ ଦେଖୁଥିଲା ? ଉଁ ହୁଁ—ତା ହୋଇଥିଲେ ଭାଇ କାର୍ତ୍ତିବାସ ସିଂହ ସିଂହ ବୋଲି ପାଟି କରିଥାନ୍ତା କାହିଁକି ? ନା ସିଂହକୁ ସେ ଦେଖିଛି । ଠିକ୍ ତା'ର ମନେ ଅଛି । କେଶର ଫୁଲାଇ ବିରାଟ ସିଂହ ଖୁବ୍ ଦ୍ରୁତ ଗତିରେ ଧାଇଁ ଆସୁଥିଲା ।

ହଠାତ୍ କାର୍ତ୍ତିକ ଆହୁରି ସତର୍କ ହୋଇଗଲା । ଟିକିଏ ଦୂରରେ ତାହାର ପଛରେ କାହାର ପଦଶବ୍ଦ । ପଦଶବ୍ଦ ତାହାର ଆଡ଼କୁ ଆଗେଇ ଆସୁଛି । କିନ୍ତୁ ଏ ଶବ୍ଦ କୌଣସି ଚତୁଷ୍ପଦର ବୋଲି ମନେ ହେଉ ନାହିଁ ।

ହଠାତ୍ ପଦଶବ୍ଦ ଥମିଗଲା ! ତାହାହେଲେ କିଏ ସେ ଆଡ଼କୁ ଆସୁ ଆସୁ ରହିଯାଇଛି ? ଯେ ହେଉନା କାହିଁକି, ସେ ପ୍ରସ୍ତୁତ ଅଛି ମୁକାବିଲା କରିବା ପାଇଁ । ଟିକିକ ପରେ ଗମ୍ଭୀର ସ୍ୱର ଭାସି ଆସିଲା—କିଏ ?

ଓଃ—ଏ ଯେ ଭାଇ କାର୍ତ୍ତିବାସ ! ଉତ୍ତରରେ କାର୍ତ୍ତିକ କହିଲା—ଭାଇ ମୁଁ ଛୁଟୁଥା ହୋଇଛି । ଏଥର କାର୍ତ୍ତିବାସ ନିଃସନ୍ଦେହରେ ଆଗେଇ ଆସିଲା ତା' ଆଡ଼କୁ । ସେ କାର୍ତ୍ତିବାସର ବାମ କାନ୍ଧରେ ହାତଟିକୁ ରଖି କହିଲା, "ଭାଇ ! ଗୋଟାଏ ସିଂହକୁ ମୁଁ ଦେଖିଲି ! ସେ ସିଂହ ନିଃଶବ୍ଦରେ କେତେବେଳେ ଆସି ମୋତେ ଆକ୍ରମଣ କରିଛି, ତାହା ମୁଁ ଜାଣେ ନାହିଁ ! ମାତ୍ର ଜାଣିଲା ବେଳକୁ ମୁଁ ତା'ର କବଳରେ ପଡ଼ିସାରିଛି । ତା'ଠାରୁ ଉଦ୍ଧାର ପାଇବାର କୌଣସି ଉପାୟ ନାହିଁ । କିନ୍ତୁ ସବୁଠାରୁ ବଡ଼ ଆଶ୍ଚର୍ଯ୍ୟର କଥା ଯେ, ଏହା ବାସ୍ତବ ନୁହେଁ, ସ୍ୱପ୍ନ !"

"ହଁ ଭାଇ ! ମୁଁ ବର୍ତ୍ତମାନ ମନେକରୁଛି, ଯେଉଁ ସମୟରେ ତୁମେ ସେହି ସିଂହକୁ ଦେଖିଥିଲ, ସେହି ସମୟରେ ମୁଁ ମଧ୍ୟ ସେ ସିଂହକୁ ଦେଖିଛି । ତା'ପରେ ତୁମ କଣ୍ଠରୁ ସିଂହ ସିଂହ ଧ୍ୱନି ଶୁଣି, ସେହି ସିଂହକୁ ବଧକରିବା ପାଇଁ ଧାଇଁ ଆସିଲି । ଏବେ ମୋର ଧାରଣା ହେଉଛି, ତୁମପରିଭଳି ମୁଁ ମଧ୍ୟ ସ୍ୱପ୍ନରେ ତାକୁ ଦେଖିଥିଲି ।"

"ଆଶ୍ଚର୍ଯ୍ୟ—ଦୁଇ ଭାଇ ଆମେ ଏକ ସମୟରେ ସେହି ଗୋଟାଏ ସିଂହକୁ ସ୍ୱପ୍ନରେ ଦେଖିଛୁ ! ପୁଣି ସେହି ସିଂହକୁ ଅନ୍ୱେଷଣ କରିବା ପାଇଁ ଆମେ ଦୁହେଁ ବନ୍ଦ ହୋଇ ଧାଇଁ ବୁଲୁଛୁ ! ଏଭଳି କଥାତ କେବେ କେଉଁଠି ଶୁଣାଯାଇ ନାହିଁ ।"

ଦୁଇଭାଇ କଥାବାର୍ତ୍ତା ହେଉ ହେଉ ପୂର୍ବାକାଶରେ ସୂର୍ଯ୍ୟ ଦେବତା ଉଦୟ ହେଲେ । ରାତିର ଅନ୍ଧକାରରେ ଯାହା ତାଙ୍କୁ ଦୃଶ୍ୟ ହେଉ ନ ଥିଲା, ସୂର୍ଯ୍ୟାଲୋକରେ ତାହା ସ୍ପଷ୍ଟ ହୋଇ ଦେଖାଗଲା । ଦୁଇଭାଇ ନିଜ ନିଜ ମଧ୍ୟରେ ଗଳ୍ପ କରି କରି ଆଗେଇ ଗଲେ ବାଂଝଗିରି ଆଡ଼କୁ ରାତିର ଭୟ ଆଉ ତାଙ୍କର ନାହିଁ ।

ଦୈତ୍ୟ ଭାନୁବନ୍ତର ପୁତ୍ର ସେ ଦୁହେଁ । ଭାନୁବନ୍ତ ଭଳି ସୌର୍ଯ୍ୟ ବୀର୍ଯ୍ୟରେ ଦୁହେଁ ଦୁହିଁଙ୍କୁ ବଳିଯାଉର । ଭାନୁବନ୍ତର ତିନିପୁତ୍ରଙ୍କ ମଧ୍ୟରୁ ଏମାନେ ଦୁଇଭାଇ ଏକାମ୍ରରେ ରହିଲେ । ଅନ୍ୟ ଭାଇ 'ଆରଣ୍ଡକ' ପ୍ରାଚୀକୂଳରେ ଥିବା ମୂର୍ତ୍ତିକା ପର୍ବତରେ ରହିବାକୁ ଭଲ ପାଇଲା । ତା'ର ଲକ୍ଷ୍ୟ ରହିଲା ଇନ୍ଦ୍ରାଣୀ ଶଚୀଙ୍କ ଉପରେ । ଶଚୀ ସ୍ନାନ କରିବାକୁ ପ୍ରାଚୀନଦୀକୁ ଆସନ୍ତି । ତାଙ୍କୁ ଏକା ଦେଖିଲେ ସେ ଧରିନେଇ ତାଙ୍କ ସହିତ ଗୃହାବାସ କରିବ । ସେ ଶୁଣିଛି, ଶଚୀ ଖୁବ୍ ସୁନ୍ଦରୀ । ଏଭଳି ସୁନ୍ଦରୀ ନାରୀ ସହିତ ଇନ୍ଦ୍ର ବିହାର କରିବା ଉଚିତ ନୁହେଁ । ଯାର୍ଦ୍ଧଦିନ ପ୍ରାଚୀକୂଳରେ ସେ ସେ ପ୍ରତୀକ୍ଷା କଲେ ମଧ୍ୟ ଶଚୀଙ୍କର କୌଣସି ସନ୍ଧାନ ପାଇଲେ ନାହିଁ । ତଥାପି ଆରଣ୍ଡକ ନିରାଶ ହୋଇନି । ସେ ଜାଣିଛି, ଦିନେ ନା ଦିନେ ଶଚୀ ସେଠାକୁ ଆସିବେ ।

କୀର୍ତ୍ତନ ଓ କୀର୍ତ୍ତିବାସ ଏକାମ୍ରରେ ରହିବା ଦିନଠାରୁ ଏକାମ୍ରେଶ୍ୱର ଶିବଙ୍କ ଦର୍ଶନ ଲାଗି କେହି ଲୋକ ଆସୁ ନାହାନ୍ତି । କାହାର ଧନଜୀବନକୁ ଡର ନାହିଁ ଯେ; ଠିକଏ ଶିବଦର୍ଶନକୁ ଯାଇ ନିଜକୁ ତାଙ୍କ ହସ୍ତେ ବଳିଦେବ ? ସେଥିପାଇଁ ଶିବ ଚିନ୍ତିତ । ରାକ୍ଷସ ଦୁଇଟାଙ୍କୁ କିଭଳି ବଧ କରାଯାଇ ପାରିବ, ତାହା ଯେତେ ସେ ଭାବିଲେ ବି କିଛି ସ୍ଥିର କରି ପାରନ୍ତି ନାହିଁ । ଅସମ୍ଭବ ବଳରେ ରାକ୍ଷସ ଦୁହେଁ ବଳୀୟାନ । ସେମାନେ କୌଣସି ଅସ୍ତ୍ରରେ ମରିବେ ନାହିଁ । କୌଣସି ପୁରୁଷଙ୍କ ଦ୍ୱାରା ସେମାନେ ବଧହେବେ ନାହିଁ ସେମାନେ ମଧ୍ୟ ବଧ ହେବେ ନାହିଁ । ଅସ୍ତ୍ରଶସ୍ତ୍ରରେ ସଜ୍ଜିତା କୌଣସି ସ୍ତ୍ରୀ ହାତରେ । କିନ୍ତୁ କୌଣସି ବଳଶାଳିନୀ ସ୍ତ୍ରୀ ଯଦି ଏକ ସମୟରେ ଦୁହିଁଙ୍କ କାନ୍ଧରେ ପାଦ ଦେଇ ଚାପିଦେଇ ପାରିବ ତେବେ ସେମାନଙ୍କୁ ବଧ କରିହେବ । ସେହି ସମୟରେ ପୁଣି ସେହି ସୁନ୍ଦରୀର ଗୋଟିଏ କର ଜଣେ ଧରିଥିବ ଓ ଅନ୍ୟ କରଟି ଆଉ ଜଣଙ୍କ ମୁଣ୍ଡରେ ଥିବ ।

ସୁନ୍ଦରୀଙ୍କ କରସ୍ପର୍ଶରେ ପୁଲକିତ ହୋଇ ହେହେ ହସି ଉଠୁଥିବେ ଦୁଇ ଭାଇ......! ଅସମ୍ଭବ.........! ସମ୍ପୂର୍ଣ୍ଣ ଅଳୀକ କଳ୍ପନା..........!! ସତରେ କିଏ ଏହିଭଳି ବଳଶାଳିନୀ କେହି ଅଛି ଯେ ନିଜକୁ ବଳିଦେଇ ଏହିଭଳି ସୁଯୋଗର ଶୀକାର ହେବ !!!

ଏକଦା ଶିବପାର୍ବତୀ ଦୁହେଁ ବସିଛନ୍ତି । ଶିବ ବିଷର୍ଣ୍ଣ ବଦନରେ ଲକ୍ଷ୍ୟ କରୁଛନ୍ତି ଉଦ୍ଧାମ ଯୌବନରେ ସେ ଦୁଷ୍ଟ ରାକ୍ଷସ ଦୁହିଁଙ୍କୁ ଦେଖି ଦେଖି ଶିବ ଚିନ୍ତିତ ହୋଇପଡ଼ିଲେ । ଦୁଇଟା ରାକ୍ଷସଙ୍କ କବଳରୁ ସେ ତାଙ୍କ ଭକ୍ତମାନଙ୍କୁ ଉଦ୍ଧାର କରି ପାରିଲେ ନାହିଁ ?

ଶିବ ବିମର୍ଷ ହୋଇଯିବାର ଦେଖି ପାର୍ବତୀ ପଚାରିଲେ, "ହଠାତ୍ ଏପରି ତୁମେ ବିମର୍ଷ ହୋଇଗଲ କାହିଁକି ? ଏଭଳି ଭାବ ତୁମର ମୁଁ ତ କେବେ ଦେଖିନଥିଲି ।"

ଦୀର୍ଘ ନିଃଶ୍ୱାସ ପକାଇ ଶିବ ଅସୁର ଦୁହିଁଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, "ଏହି ଦୁଇ ଅସୁରଙ୍କ ପାଇଁ ମୁଁ ଚିନ୍ତିତ । ଏମାନଙ୍କ ଯୋଗୁ ବିଶ୍ୱରେ ପବିତ୍ରତମ ଏକାମ୍ରକ୍ଷେତ୍ର ଭକ୍ତମାନଙ୍କ ଦ୍ୱାରା ପରିତ୍ୟକ୍ତ । ସମସ୍ତେ ଭୟ କରୁଛନ୍ତି, ଏହି ତୀର୍ଥରେ ପଦାର୍ପଣ କରିବାକୁ । ମୁଁ ସଂହାରକର୍ତ୍ତା ହେଲେ ମଧ୍ୟ ଏମାନଙ୍କର ମୃତ୍ୟୁ ମୋ ହାତରେ ନାହିଁ । ଏପରିକି ଏମାନଙ୍କର ବଧ ନାହିଁ କୌଣସି ପୁରୁଷ ହାତରେ ।"

ଶିବଙ୍କ କଥାରେ ପାର୍ବତୀଙ୍କର ମୁଖ ଦେଶରେ ହସର ଆଭା ଫୁଟି ଉଠିଲା । ସେ କହିଲେ, "କୌଣସି ପୁରୁଷ ସିନା ପାରିବେ ନାହିଁ, ମୁଁ କିନ୍ତୁ ପାରିବି । ତୁମେ ଯଦି ଟିକିଏ ଆଦେଶ ଦେବ, ତେବେ ଏ ଦୁହିଁଙ୍କୁ ବଧ କରିବାକୁ ମୋତେ ବେଶୀ ସମୟ ଲାଗିବ ନାହିଁ ।"

"ତୁମେ ପାରିବ ? ମାତ୍ର ଏମାନେ ଯେ କୌଣସି ଅସ୍ତ୍ରରେ ବଧ ହେବେ ନାହିଁ ।"

ଖିଲ ଖିଲ ହୋଇ ହସି ଉଠିଲେ ପାର୍ବତୀ । "ତୁମେ ଖାଲି ମୋତେ ଟିକିଏ ଅନୁମତି ଦିଅ । ତା'ପରେ ଦେଖିବ, ମୁଁ କପରି ତାଙ୍କୁ ବଧ କରିବି । ବୀର ପାଇଁ ସିନା ଅସ୍ତ୍ର ଆବଶ୍ୟକ ପଡ଼େ, କିନ୍ତୁ ଏମାନଙ୍କ ପାଇଁ ଅସ୍ତ୍ରର କିବା ଦରକାର ? ଏମାନଙ୍କ ପାଇଁ ଯେଉଁ ଅସ୍ତ୍ର ଆବଶ୍ୟକ, ତାହା ମୋ ପାଖରେ ଅଛି ।"

ଭଲଭାବରେ ଶିବ ଜାଣନ୍ତି ପାଦ୍ୱୟଙ୍କୁ । ରାକ୍ଷସ ଦୁହିଁଙ୍କ ବଧ ନିମିତ୍ତ ଶିବ ଅନୁମତି ପ୍ରଦାନ କଲେ । କିନ୍ତୁ କିପରି ଭାବରେ ସେ ରାକ୍ଷସ ଦୁହିଁଙ୍କୁ ବଧ କରିବେ, ତାହା ତାଙ୍କ ଚିନ୍ତାର ବିଷୟ ।

ସୂର୍ଯ୍ୟ ପୂର୍ବାକାଶରୁ ମଧ୍ୟାକାଶ ଆଡ଼କୁ ଯେତିକ ଆଗେଇ ଚାଲିଲେ, ସେତିକ ଉଷ୍ଣତା ବୃଦ୍ଧି ପାଇବାକୁ ଲାଗିଲା । ଦୁଇଭାଇ ନିଜ ନିଜ ମଧ୍ୟରେ ଗପ କରି କରି ଆଗେଇ ଚାଲିଛନ୍ତି ଖଣ୍ଡଗିରି ଆଡ଼କୁ । ବେଳୁବେଳ ସୂର୍ଯ୍ୟଙ୍କ ପ୍ରଖର ତାପରେ ଦୁହିଁଙ୍କ କଳେବର ଘର୍ମାକ୍ତ । ଏକାମ୍ରର ଗୁଳ୍ମଲତା ଓ କଣ୍ଟାବାଉଁଶର ଜଙ୍ଗଲ ଅତିକ୍ରମ କରି ଖଣ୍ଡଗିରିରେ ପହଞ୍ଚିଲା ବେଳକୁ ଦୁହେଁ ଟିକେ କ୍ଲାନ୍ତ ଅନୁଭବ କଲେଣି । ତେଣୁ ଖଣ୍ଡଗିରି ଉପରେ ଥିବା ଗୋଟିଏ ଝଙ୍କା ଗଛ ତଳେ ଦୁହେଁ ବସି ପଡ଼ିଲେ ।

ଏକାମ୍ର ଆଡ଼ୁ ବନଲତା ଭେଦକରି ଏକ ଖିଲ ଖିଲ ହସ ଆସିଲା । ସେ ହସରେ କି ମାଦକତା ଥିଲା କେଜାଣି, ଦୁଇ ଭାଇଙ୍କ କ୍ଲାନ୍ତି ଉଭେଇଗଲା ତାହା ଶୁଣୁ ଶୁଣୁ । ଚକିତ ଚାହାଣିରେ ଦୁହେଁ ଚତୁର୍ଦ୍ଦିଗକୁ ଅନାଇଲେ । କାହିଁ କେହି ତ କେଉଁଠି ନାହାନ୍ତି । ତେବେ ଏ ସ୍ୱର ଆସିଲା କେଉଁଠୁ ?

ହଁ, ଦୂରରେ କିଏ ଗୋଟିଏ ଆସିଲା ଭଳି ଦେଖାଯାଉଛି । ଏକାମ୍ର ଆଡ଼ୁ ପତରଆ ଜଙ୍ଗଲ ଭେଦକରି ବଙ୍କା ଟଙ୍କା ହୋଇ ଖଣ୍ଡଗିରି ଆଡ଼କୁ ଯେଉଁ ମଣିଷ ଗଲା ରାସ୍ତାଟି ମାଡ଼ିଯାଇଛି, ସେହି ରାସ୍ତାରେ କିଏ ଜଣେ ଆସୁଛି । ଖୁବ୍ ସମ୍ଭବତଃ ସ୍ତ୍ରୀ ଲୋକଟିଏ, ଗୋଟାଏ କ'ଣ ମୁଣ୍ଡାଇଛି । ହଲି ଦୋହଲି ଛନ୍ଦକ ଚାଲିରେ ସପିଲ ରାସ୍ତାରେ ।

ଏକ ଲୟରେ ଦୁହେଁ ଚାହିଁଛନ୍ତି ସେହି ସ୍ତ୍ରୀ ଲୋକଟିକୁ । ସେ ଚାଲିଛି ପଛଫୁଲଣିଆ ଗାତିଟାଇ ଗୁଣୁ ଗୁଣୁହୋଇ କଣ ଗାଣିରେ । କ୍ରମେ ସ୍ପଷ୍ଟଭାବେ ଦେଖାଗଲା ସ୍ତ୍ରୀ ଲୋକଟି । ଦୂରରୁ ନିକଟେଇ ଆସିଲା—ନିକଟରୁ ଅଦୂର ନିକଟକୁ ଚାଲି ଆସିଲା ସେ ।

ଆଃ କି ସୁନ୍ଦର ତା'ର ମୁହଁଟି । ତା'ର ଗୋରା ଚକ୍ ଚକ୍ ମୁହଟିରେ ସୂର୍ଯ୍ୟ ତାପ ଯୋଗୁ ଝାଳ ବନ୍ଦୁ ବନ୍ଦୁ ହୋଇ ଜକେଇ ଆସିଛି । ସତେ

ଯେପରି ହୀରା କଣିକା ଗୁଡ଼ିଏ ତା' ମୁହଁରେ କିଏ ଖଞ୍ଜି ଦେଇଛନ୍ତି । ଚଞ୍ଚଳ ହରିଣୀର ଆଖି ପରି ଲମ୍ବା ଆୟତାକାର ଚକ୍ଷୁରେ ଯେପରି ପ୍ରେମ ନିମନ୍ତ୍ରଣର ସଙ୍କେତ । ସତେ ଯେପରି ସେ କହୁଛି—ଆସ ହେ ! ମୋ ମୁହଁରୁ ବାଳଗୁଡ଼ା ପୋଛିଦେଇ ବନ୍ଧୁଲି ଅଧରରେ ଅଧର ମିଶାଇ ଦିଅ । ଶୁଆ ଥଣ୍ଟ ଭଳି ନାକ, ଧନୁଭଳି ଭ୍ରୂଲତା, ମୁଣ୍ଡର ଚିକ୍କଣ କଳା ବାଳଗୁଡ଼ିକ ସୁନ୍ଦର ଭାବେ ଗୁଣ୍ଠି ପଡ଼ିଛି । ସବୁଠାରୁ ସୁନ୍ଦର ତା'ର ସୁଠାମ ବକ୍ଷୋଜ ଯୁଗଳ । ମୁଣ୍ଡର ଦହି ହାଣ୍ଡିଟିକୁ ଦୁଇ ହାତରେ ଶକ୍ତଭାବେ ଧରିଥିବା ହେତୁ ତା'ର ବକ୍ଷୋଜର ଶୋଭା ଅତ୍ୟନ୍ତ ସୁନ୍ଦର, ସ୍ପଷ୍ଟ ହୋଇ ଦେଖାଯାଉଥାଏ । ବଙ୍କାଟଙ୍କା ରାସ୍ତାରେ ସେ ଆସିଲାବେଳେ କେବେ ତା'ର ଆଗ, କେବେ ପଛ ଦୁଇଜଣଙ୍କ ଦୃଷ୍ଟି ପଥାରୁଢ଼ ହୋଇଥାଏ । ତା'ର ଦୁଇ ନିତମ୍ବର ଶୋଭା କି ଚମତ୍କାର । ମୁନି ହେଲେ ମଧ୍ୟ ତା'ର ତପ ଛାଡ଼ି ସେହି ସ୍ତ୍ରୀ ଲୋକର ଅଙ୍ଗଶୋଭାକୁ ଚାହିଁ ରହିବ ।

ବାଟ ଚାଲୁ ଚାଲୁ ଟିକିଏ କଣେଇ କରି ସେମାନଙ୍କୁ ଚାହିଁଦେଲା ସ୍ତ୍ରୀ ଲୋକଟି । ଆଃ-କି ସୁନ୍ଦର ସେ ମଣିଷରଟାଣି ! ଯୁବାମୁରଦୁଇଜଣଙ୍କ ହୃଦୟର ସୂକ୍ଷ୍ମ ପରଦା ଭିତରେ ଶରଭଳି ସେ ଦୃଷ୍ଟି ବାଣ ଭେଦିଗଲା । ଦୁଇଭାଇ ଏକ ସମୟରେ ବିମୋହିତ ହୋଇ କହି ଉଠିଲେ, "କିଏ ଯାଉଛ— କ'ଣ ନେଉଛ ?

ସ୍ତ୍ରୀ ଲୋକଟି ଲାଜସା ଲାଜସା ହୋଇ କହିଲା—"ଆଜ୍ଞା, ମୁଁ ଗୋପାଳୁଣୀ ଦହି ବିକିବାକୁ ନେଉଛି । ତୁମେ ଆପଣ ଦହି ଖାଇବ କି ?"

ଓଃ—କି ସୁନ୍ଦର ସ୍ୱର ! ଏଭଳି କଣ୍ଠସ୍ୱର ବୋଧେ ସେମାନେ ଜୀବନରେ କେବେ ଶୁଣି ନ ଥିଲେ । ଦୁହେଁ ହାତଠାରି ଡାକିଲେ ଗୋପାଳୁଣୀକୁ ।

ଧୀରେ ଧୀରେ ଛଳକୁ ଅନାଇ ଗୋପାଳୁଣୀ ତାଙ୍କର ଆଡ଼କୁ ଆଗେଇ ଆସିଲା । ତା'ର ଧୀର ଚାଲି, ମୁହଁର ମିଠା ମିଠା ମହୁଆ ହସ ଦୁଇଭାଇଙ୍କୁ ଏଭଳି ଉଚ୍ଛନ୍ନ କରିଦେଇଥାଏ ଯେ, ସେ ତାଙ୍କ ପାଖରେ ପହଞ୍ଚୁ ନ ପହଞ୍ଚୁଣୁ ଦୁହେଁ ଚଞ୍ଚୁ ଉଠି ପଡ଼ି ତା' ମୁଣ୍ଡରୁ ଦହି ହାଣ୍ଡିଟି ଟେକି ଛଳେ

ହୋଇଦେଲେ । ତା'ପରେ ଏକ ଧ୍ୟାନରେ ଅନାଇ ରହିଲେ ତା' ସୁନ୍ଦର ଯୌବନ ଆଡକୁ ।

ଗୋପାଳୁଣୀ କହିଲା—"ଆଜ୍ଞା ଦେଖନ୍ତୁ, ଏହି ଦହି ହାଣ୍ଡିକରେ ମୋର ପାଞ୍ଚ ପ୍ରାଣୀ କୁଟୁମ୍ବ ବଞ୍ଚନ୍ତି । ଗ୍ରାମକୁ ନେଇଗଲେ, ଲୋକେ ଦହି ନେଇ ଧାନ ଦେବେ । ଆପଣ···"

କଥା ଛଡାଇ ଅର୍ଜୁନ କହିଲା, "ଆରେ ଧାନ କ'ଣ, ତୋ ଦହି ବଦଳରେ ଦଶ ନଉତିକୁ ସୁନାର ମାଳାରେ ଭର୍ତ୍ତି କରି ଦେବୁ । ଆମେ କ'ଣ ସାଧାରଣ ଗାଉଁଲି ଲୋକ ହୋଇଛୁ, ତୋ ଦହି ବଦଳରେ ଧାନ ଦେବୁ ?"

ଦୁଇଭାଇ ଶିଅଳୀପତ୍ର ଦୁଇଟି ଧରି ମୁହଁରେ ଲଗେଇ ବସି ପଡ଼ିଲେ । ଅଳ୍ପ ଅଳ୍ପ ହସି ଗଉଡୁଣୀ ଦୁଇଭାଇଙ୍କୁ ଦହି ପରଷିଲା । ଜଣଙ୍କୁ ଥୋଡାଏ ଦହି ଦେଲା ପରେ ଆଉଜଣେ 'ଦିଅ ଦିଅ' ଡାକ ପକାଏ । ତା' ମୁହଁରେ କିଛି ଦହି ଢାଳୁ ଢାଳୁ ଆରଜଣଙ୍କ କଟାଳ କରେ ଦହି ପିଇବାକୁ । ଦହି ପିଇଲାବେଳେ ଅସୁରେ ଗୋପାଳୁଣୀର ମୁଖ ଓ ବକ୍ଷକୁ ଦୃଷ୍ଟି ପକାଇ ନିଜକୁ ଅସହାୟ କରି ଚୋଳନ୍ତି । ଇଚ୍ଛା ହୁଏ, ମୁହଁ ଖୋଲି ଗୋପାଳୁଣୀକୁ ପଦେ କଥା କହିଦେବାକୁ । କହୁ କହୁ ଢୋକ ନିଅନ୍ତି ନିଜ କଥାକୁ ସେମାନେ । ସେମାନଙ୍କର ଲୁଚୁ ଲୁଚୁ ଭାବ ଗୋପାଳୁଣୀକୁ ଆନନ୍ଦ ଦିଏ । ମୁହଁରେ ତା'ର ଫୁଟି ଉଠେ ମୃଦୁକ ହସ । ସେ ହସରେ ଦୁଇ ଭାଇ ଆହୁରି ମଜ୍ଜିଆଲା ହୋଇଯାନ୍ତି ।

ଦେଖୁ ଦେଖୁ ହାଣ୍ଡିଏ ଯାକ ଦହି ଦୁଇ ଭାଇଙ୍କ ପେଟରେ ଶେଷ । ଗୋପାଳୁଣୀ ଖାଲି ହାଣ୍ଡିଟି ଦେଖାଇ 'ହାଣ୍ଡିରେ କିଛି ନାହିଁ' ହସି ହସି କହିଲା ବେଳେ, ଦୁଇଭାଇ ହାକୁଡ଼ି ମାରି ସେମାନଙ୍କ ପେଟ ବି ପୂରିପୂରି ହୋଇଯାଇଛି ବୋଲି କହିଲେ ।

ଏଣିକି ଦହିର ପଇସା ଦେବାକଥା । ଗୋପାଳୁଣୀ କିଛି ନ କହୁଣୁ ଦୁହେଁ ନିଜ ନିଜ ଗଳାରୁ ରତ୍ନହାର କାଢି ଗୋପାଳୁଣୀ ହାଣ୍ଡିରେ ପକାଇ ଦେଲେ ।

ତା'ପରେ ନିଜ ହାତ ଓ ବାହୁରୁ ଗହଣା ତକ ଖୋଲି ପକାଇଦେଲେ ଦହି ହାଣ୍ଡିରେ !

ଦହିର ମୂଲ ପାଇ ଏଥର ଗୋପାଳୁଣୀ ଉଠିଲା । ଦୁଇଭାଇଙ୍କ ଅଳୁହା କଥା ରହିଗଲା ଉଚ୍ଛନା ମନରେ । ଗୋପାଳୁଣୀ ତା' ଦହିପାନିଆଟି ମୁଣ୍ଡରେ ଥୋଇ ଦୁଇଭାଇଙ୍କୁ ପଛ କରି ଧୀର ପଦକ୍ଷେପରେ ଗ୍ରାମାଭିମୁଖେ ଏକାମ୍ରର ଅଭିମୁଖେ ।

କାର୍ତ୍ତିବାସ ପଛରୁ ଡାକି କହିଲେ, ଆଲୋ ଗୋପାଳୁଣୀ ! କାଲିକୁ ଦହି ଆଣିବୁ; ଆମେ ଏଇଠାରେ ବସିଥିବୁ । ତୋ ଦହିର ମୂଲ ସଙ୍ଗେ ସଙ୍ଗେ ଦେଇ ଯିବୁ । ଆମେ କେବେ ତୋ ଦହିର ପଇସା ବୁଡେଇ ଦେବୁ ନାହିଁ ।"

ପଛକୁ ମୁହଁ ଫେରାଇ ଅନାଇ ଗୋପାଳୁଣୀ ଟିକିଏ ହସିଦେଲା । ତା' ପରେ କହିଲା, "ହଁ ସାଆନ୍ତେ, ମୁଁ କାଲିକୁ ଭଲ ଦହି ନେଇ ଆସିବି ! ଆପଣଙ୍କ ଭଳି ସାଆନ୍ତେ କ'ଣ ଦହି ଖାଇ ଦହିର ମୂଲ ଦେବେ ନାହିଁ ଯେ ମୁଁ ସେ ବିଷୟରେ ଚିନ୍ତା କରିବି !"

ଗୋପାଳୁଣୀ ଫୁଲେଇ ଦୁଲେଇ ହୋଇ ଚାଲିଯାଉଥିଲା ମନ ଖୁସିରେ । ଦୁଇଭାଇ ତା'ର ଧୀର ଚାଲି ଏବଂ ନିତମ୍ବର ଶୋଭାକୁ ଏକ ଧ୍ୟାନରେ ଚାହିଁ ରହିଥିଲେ ।

ଯେତେବେଳେ ଗୋପାଳୁଣୀ ପଡ଼ୁରିଆ ଜଙ୍ଗଲର ଅଙ୍କାବଙ୍କା ରାସ୍ତାରେ ସମ୍ପୂର୍ଣ୍ଣ ଅଦୃଶ୍ୟ ହୋଇଗଲା, ସେତେବେଳେ ଦୁଇଭାଇ ପ୍ରକୃତିସ୍ଥ ହେଲେ ।

କାର୍ତ୍ତିକ କହିଲେ, "ସତେ ଆମେ କେଡ଼େ ବୋକା ! କେତେ ବଡ଼ ସୁବିଧାକୁ ହାତମୁଠାରେ ପାଇ ଆମେ କି ହରାଇଲେ ? ତା' ହାବଭାବରୁ ଯାହା ଜଣାପଡ଼ୁଥିଲା, ଦହି ସହିତ ତା' ଯୌବନ ପସରାକୁ ମଧ ଲୋଟାଇ ଦେଇଥାନ୍ତା ।

କୃତ୍ତିବାସ କହିଲେ, "ହଁରେ, ଏଭଳି ସ୍ତ୍ରୀ କେବଳ ସୌଭାଗ୍ୟବଶରୁ ମିଳନ୍ତି । ମୁଁ ଭାବୁଥିଲି ଟି ତାକୁ କହିଦେବାକୁ; କିନ୍ତୁ କାହିଁକି କେଜାଣି ଟିକିଏ ରହିଗଲି । ହେଉ, ସେ ତ କାଲିକି ଆସିବ । ଆମ ଦହିଖିଆ ପଛେ ପରେ

ହେବ : ଅଗେ ସଫା ସଫା ତାକୁ ମନ କଥା ଖୋଲି ଦେବା । ନ ହେଲେ ମାଇପଟା କ'ଣ ବନେଇ ଯିବକ ଆମଠାରୁ ?"

"କାଲିକୁ ସେ ଅସିଲେ ତ ?"

"ଏ, କାଲିକୁ ସେ ଆସିବ ନାହିଁ ? ଦହି ବଦଳରେ ଯାହା ସେ ନେଇଛି, ତାହା କ'ଣ ଦହି ମୂଲ୍ୟର ବହୁ ଗୁଣ ନୁହେଁ ?"

ଦୁଇ ଭାଇଙ୍କୁ ସେ ଦିନଟା ଭଲଲାଗିଲା ନାହିଁ । କେତେବେଳେ ସେ ଦିନଟି ଯାଇ ପୁଣି ତା' ଆରଦିନ ହେବ, ତାହା ଥାଏ ତାଙ୍କର ଏକମାତ୍ର କାମ୍ୟ । ଖାଇବା ଶୋଇବା, ବୁଲିବା, ସବୁ କପଟ ତାଙ୍କୁ ଭଲ ଲାଗୁ ନଥାଏ । ଏହାର ମଧ୍ୟରେ ରାତି ଆସିଲା ।

ରାତି ପାହୁ ପାହୁ ଦୁଇଭାଇ ଯାଇ ବଂଶଗିର ଉପରେ ହାଜର । ଗତକାଲି ଯେଉଁଠାରେ ବସିଥିଲେ ଠିକ୍ ସେହି ସ୍ଥାନରେ ବସି ସେ ଏକ ଧ୍ୟାନରେ ଅନାଇ ରହିଲେ ଏକାମ୍ର ଆଡ଼କୁ । ଗୋଟିଏ ମୁହୂର୍ତ୍ତ ସେମାନଙ୍କୁ ଯୁଗପରି ବୋଧ ହେଉଥାଏ । ବହୁ ଦୂରରେ କ'ଣ ଗୋଟିଏ ଦେଖାଗଲେ ତାଙ୍କର ମନେ ହେଉଥିଲା—ହେଇ ସେ ଆସିଗଲା !

ବହୁ ସମୟ ପରେ ଗୋପାଳୁଣୀ ଦେଖାଗଲା । ସେ କେଉଁ ବାଟ ଦେଇ ଆସୁଥିଲା କେଜାଣି, ହଠାତ୍ ଗୋଟିଏ କର୍ଣ୍ଣିକାଉଁଶ ବୁଦା ଉହାଡ଼ରୁ ବାହାରି ଆସିଲା ପଦାକୁ । ଗତକାଲି ଠାରୁ ସେ ଆହୁରି ସୁନ୍ଦର ଦିଶୁଥାଏ । ଗୋରା ତକ ତକ ଦେହକୁ ନାଳ ଶାଢ଼ୀଟି ତାକୁ ଯେଉଁଭଳି ମାନୁଥାଏ' ସେହିଭଳି ଦେହରେ ଲଗାଇ ଆସିଥିବା ଅଷ୍ଟଅଳଙ୍କାର ଦ୍ୱାରା ସେ ଅହୁରି ସୁନ୍ଦର ଦିଶୁଥାଏ ।

ଗୋପାଳୁଣୀ ତାଙ୍କ ପାଖରେ ପହଞ୍ଚିବା ପୂର୍ବରୁ ସେ ଦୁହେଁ ଉଠିପଡ଼ି ତା' ମୁଣ୍ଡରୁ ଦଧିନଉତି ଓହ୍ଲାଇ ଶୂନ୍ୟେ ଶୂନ୍ୟେ ଟେକି ଅଣିଲେ । ତାଙ୍କ ତରବରିଆ ହାବ ଭାବ ଦେଖି ଗୋପାଳୁଣୀ ମୁରୁକ ମୁରୁକ ହସୁଥାଏ । ତା' ମୁହଁରେ ହସ ଦେଖି, ଦୁଇଭାଇ ଏକ ଅପୂର୍ବ ଶିହରଣ ଅନୁଭବ କରୁଥାନ୍ତି

ହସି ହସି ଗୋପାଳୁଣୀ କହିଲା "ସତ ଆଜ୍ଞେ, ଆଜି ଦୁହିଁଙ୍କ ଘର ଖୁସି ଥିଲା ଭଳି ଜଣା ପଡୁଛି । କ'ଣ ନୂଆ କିଛି ମିଳିଲା କି ?"

ସଙ୍ଗେ ସଙ୍ଗେ କାଳିଦାସ କହିଲେ, "ହଁ ଲୋ, ସେଇଥିପାଇଁ ତ ଆମେ ଏତେ ବ୍ୟସ୍ତ । ଆମଠାରେ କି ପ୍ରସନ୍ନତା ଦେଖୁଛୁ; ତୁ ଟିକିଏ ପ୍ରସନ୍ନ ହେଲେ ଆମକୁ ସବୁ ମିଳନ୍ତା । ଆମେ ଚାହୁଁ, ତୁ ଆଜି ଏ ଘର ଚତ୍ୱରରେ ଦହି ନ ବିକି ଆମ ସହିତ ରହିଯା । ଆମେ ତୋତେ ରାଜରାଣୀ କରିବୁ । ଏ ହୃଦୟର ସିଂହାସନରେ ବସାଇ ତୋହର ସେବାରେ ଦିନ କଟାଇବୁ ।"

ଟିକିଏ ଲାଜେଇ ଗଲା ଗୋପାଳୁଣୀ କାଳିଦାସ କଥାରେ । ସେ ତଳକୁ ଅନାଇ ବାଁ ଗୋଡ଼ର ବୁଢ଼ା ଆଙ୍ଗୁଠିରେ ତଳେ ଗାର କାଟି କାଟି କହିଲା, "କାଲିଠାରୁ ତୁମ ଦୁହିଁଙ୍କ ଦେଖି ଦେଖି ତୁମ ପ୍ରତି ମୋର କିପରି ଗୋଟାଏ ମମତା ଆସିଯାଇଛି । ତୁମ ସହିତ ମୁଁ ରହିଲେ ମୋ ଜୀବନ ବି ଧନ୍ୟ ହୁଅନ୍ତା; କିନ୍ତୁ ମୁଁ ନବୁଝିଆ ପଣରେ ଏଭଳି ଗୋଟାଏ ଓଷା କରିଦେଇଛି, ତା'ର ପାଇଁ ଏବେ ପସ୍ତେଇବାକୁ ପଡୁଛି ।"

ବର୍ଦ୍ଧନ କହିଲେ, "ଗୋଟାଏ ଓଷା କରିଛୁ ? କି ଓଷା ? ସେ ଓଷାପାଇଁ ଯେତେ ଧନ ଦରକାର ହେବ, ତାହା ବର୍ତ୍ତମାନ ଆମେ ଦେଇଦେବୁ ।"

ଗୋପାଳୁଣୀ ବ୍ୟସ୍ତ ହୋଇ କହିଲା, "ନା···ନା···; ସେଥିରେ ଧନର କିଛି ଆବଶ୍ୟକତା ନାହିଁ । ଖାଲି ଟିକିଏ···ନା ନା, ମୁଁ ସେ କଥା ମୁହଁରେ କହି ପାରିବିନାହିଁ ।"

ଦୁଇଭାଇ ବ୍ୟସ୍ତ ହୋଇ ପଡ଼ିଲେ—'ନା···ନା···; ଲାଜ କ'ଣ କୁହ ! ଯାହା କହିବ ଆମେ ପ୍ରାଣଘାତ କରି ପୂରଣ କରିଦେବୁ !'

ଟିକିଏ ମୁହଁ ଶୁଖାଇ ପକାଇ ଗୋପାଳୁଣୀ କହିଲା, "ମୁଁ ଓଷା କରିଛି —ଯାହାକୁ ବାହା ହେବି, ତା'ର କାନ୍ଧ ଉପରେ ଚଢ଼ି ଗୋଟିଏ ହାତରେ ତା'ହାତକୁ ଧରିଥିବି ଓ ଆର ହାତ ତା' ମୁଣ୍ଡ ଉପରେ ଥୋଇଥିବି । ଏହିଭଳି ଭାବେ ଠିଆ ହେଲାବେଳେ ସେ ମୋତେ କାନ୍ଧରେ ଧରି ତିନିକୋଶ ବାଟ ବୁଲାଇବ । ଯେ ପର୍ଯ୍ୟନ୍ତ ମୁଁ କ୍ଳାନ୍ତ ନ ହୋଇଛି, ସେ ପର୍ଯ୍ୟନ୍ତ କାନ୍ଧରୁ ଓହ୍ଲାଇବା ପ୍ରଶ୍ନ ନାହିଁ ।"

କଥା ପଡ଼୍ତୁ ନ ପଡ଼ୁଣୁ ଦୁଇଭାଇ କହି ଉଠିଲେ, "ଇଏ ଗୋଟାଏ କଥା ? ଏଇ କଥାକୁ ଏତେ ଚିନ୍ତା ? ଆସ ଆସ, ଆମେ ତୁମକୁ ତିନିକୋଶ କାନ୍ଧିକି, ଏ ଚନ୍ଦ୍ରମଣ୍ଡଳ କାନ୍ଧରେ ଧରି ବୁଲାଇ ଆଣିବୁ । ତୁମେ କ୍ଳାନ୍ତ ନ ହେବା ପର୍ଯ୍ୟନ୍ତ ଆମେ ବା କାହିଁକି ଉହିବୁ !"

ସଙ୍ଗେ ସଙ୍ଗେ ଅସୁର ଦୁହେଁ ଦୁହିଁଙ୍କ କାନ୍ଧକୁ ଯୋଡ଼ି ବସିପଡ଼ିଲେ । ଗୋପାଳୁଣୀ କହିଲେ, "ଦହିତକ ପିଇଦିଅ । ତୁମକୁ ଶୋଷ କରୁଥିବ ।"

"ନା ନା; ତୁମ ଓଷା ପୂରଣ ହେଲା ପରେ ଆମେ ଦହି ପିଇବୁ ! ଆସ ଆସ, ଆଉ ଡେରି କରନା—" ଅସୁର ଦୁହେଁ ଗୋପାଳୁଣୀଙ୍କୁ କାନ୍ଧରେ ବସେଇ ବୁଲାଇ ଆଣିବା ଲାଗି ବ୍ୟସ୍ତ ହୋଇ ପଡ଼ିଲେ ।

ଗୋପାଳୁଣୀ ମନ୍ଦ ମନ୍ଦ ହସି ଦହି ହାଣ୍ଡି ଟି ଧରି ଦୁଇ ଭାଇଙ୍କୁ ଦହି ଖାଇବା ପାଇଁ ନିମନ୍ତ୍ରଣ କଲା । ଦୁଇଭାଇ ପରସ୍ପରକୁ ଚାହିଁ ହସିଦେଲେ । ତା'ପରେ ଅଞ୍ଜଳି ପାତି ଦହିତକ ଚାଲୁଚାଲୁ ହୋଇ ପିଇଦେଲେ । ସେଦିନ ଦହିରେ ଶାକର ମେଥି ପକାଇ ଆଣିଥିଲେ ଗୋପାଳୁଣୀ । ଖାଉ ଖାଉ ଦୁହିଁଙ୍କୁ ନିଶା ଧରିନେଲା ।

ନିଶାରେ ବେଖେଉ ହୋଇ ଦୁହେଁ ଦୁହିଁଙ୍କ କାନ୍ଧରେ ଗୋପାଳୁଣୀଙ୍କୁ ଶୀଘ୍ର ଠିଆ ହେବାପାଇଁ କାକୁତି ମିନତି କଲେ । ଗୋପାଳୁଣୀ ହସି ହସି ଦୁଇଗୋଡ଼ ଦୁହିଁଙ୍କ କାନ୍ଧରେ ଦେଇ ଠିଆ ହେଲେ । ତା'ପରେ ଜଣଙ୍କ ହାତକୁ ଧରିଲେ ଓ ଅନ୍ୟ ହାତରେ ଅନ୍ୟ ଜଣକ ମୁଣ୍ଡକୁ ଦୃଢ଼ ଭାବରେ ଧରି ପକାଇଲେ । ଅସୁର ଦୁହେଁ ଗୋପାଳୁଣୀକୁ କାନ୍ଧରେ ଠିଆ କରାଇ କେତେ ଆଡ଼ ବୁଲାଇଲେ, ତାହା ତାଙ୍କର ମନେନାହିଁ । ବହୁ ସମୟ ବୁଲି ବୁଲି ନିଶାରେ ଟଳି ଟଳି ଚାଲୁଥିବା ସମୟରେ ହଠାତ୍ ତାଙ୍କ କାନ୍ଧ ଉପରେ ଅସହ୍ୟ ଓଜନ ଅନୁଭବ କଲେ । ତା'ପରେ ତାଙ୍କ ମୁଣ୍ଡ ଉପରୁ ଶୁଣିବାକୁ ପାଇଲେ ଘଡ଼ଘଡ଼ି ଭଳି ଏକ ହୁଙ୍କାର ସ୍ତବ୍ଧ ହୋଇ ସେମାନେ ଠିଆ ହୋଇଗଲେ ଓ ମୁହଁ ଟେକି ଗୋପାଳୁଣୀକୁ ଦେଖିବାକୁ ଚେଷ୍ଟାକଲେ ।

ଗୋପାଳୁଣୀ ତାଙ୍କ କାନ୍ଧ ଉପରେ ଛୁଡା ହୋଇ ବିରାଟ ରୂପ ଧାରଣ କରିଛନ୍ତି । ତାଙ୍କ ଦେହର ଭାର ଏତେ ଗରୁ ହୋଇଯାଉଛି ଯେ, ଦୁଇଭାଇ ସେ ଭାର ସହ୍ୟ କରି ପାରିଲେ ନାହିଁ ।

ଏକାମ୍ରକାନନର ପଶ୍ଚିମରେ ଭୁବନେଶ୍ୱର—ସେହି ଭୁବନେଶ୍ୱରର ଉତ୍ତରରେ ନିଜ କାୟାକୁ ବର୍ଦ୍ଧିତ କରି ଅନନ୍ତ ଜନ୍ତୁ ହୋଇ ରୁପି ଦେଲେ ଦୁଇଭାଇଙ୍କୁ ଗୋପାଳୁଣୀ । ଦୁଇଭାଇଙ୍କର ଘୋର ଗର୍ଜନରେ ପ୍ରକମ୍ପିତ ହେଲା ଏକାମ୍ର ବନାଣର ସମସ୍ତ ଅଞ୍ଚଳ । ଦେବୀଙ୍କର ପାଦାଘାତରେ ମର୍ଦ୍ଦିତ ହେଲେ ରାକ୍ଷସ ଦୁହେଁ । ପୃଥିବୀ ସହ୍ୟ କରି ପାରିଲା ନାହିଁ ଦେବୀଙ୍କ ପାଦଭାର । ସେତେବେଳେ ସୂର୍ଯ୍ୟଙ୍କର ପ୍ରଖର କିରଣ ମ୍ଳାନ ହୋଇଗଲା । ରାକ୍ଷସ ଦ୍ୱୟଙ୍କ ସହିତ ପୃଥିବୀର କିଛି ଅଂଶ ନିମ୍ନଗାମୀ ହେଲା ।

ଏହି ସମୟରେ ଶୂନ୍ୟରୁ ବାଜିଉଠିଲା ମନ୍ଦ୍ର ତାନରେ ଦେବବାଦ୍ୟ । ଦେବତାମାନେ ଯୁକ୍ତକରରେ ମହାଦେବୀ ପାର୍ବତୀଙ୍କ ସ୍ତବ ଗାନ କରୁଥିଲେ । ସ୍ୱର୍ଗରୁ ଭାସି ଆସୁଥିଲା ଗୋପାଳୁଣୀଙ୍କର ଜୟ ଜୟକାର ।

ଏତିକବେଳେ ଦେବୀ ଦେଖିଲେ ପିନାକଧାରୀ ତାଙ୍କ ସ୍ୱାମୀ ମହାଦେବ ଆନନ୍ଦରେ ବିଭୋର ହୋଇ ନାଚି ନାଚି ତାଙ୍କରି ଆଡ଼କୁ ଆସୁଛନ୍ତି । ତାଙ୍କ ଦକ୍ଷହସ୍ତରେ ଆଶୀର୍ବାଦ ସୂଚକ ମୁଦ୍ରା !



# ମହାମାୟା କୌତୁକ

ରକ୍ତାକ୍ତ ଦେହରେ ସେ ଫେରି ଆସିଲେ ଅପେକ୍ଷିଥିବା ରଥ ମଧ୍ୟକୁ । ମନ ତାଙ୍କର ଅନନ୍ଦ । ଓଃହୋ—କେତେ ଦିନ ସତେ ନ ଫାଙ୍କିଲି ସେ । ସତ୍ୟ ଗଲା, ତ୍ରେତୟା ଗଲା, ଏବେ ଦ୍ୱାପର ସରିବାକୁ ଆଉ ବା କେତେ କାଳ ଅଛି ? ଏହି ପାଣ୍ଡବଙ୍କ ବଞ୍ଚିଥିଲା ବେଳେ ତ କଳି ପ୍ରବେଶ କରିବ । ଏତେଦିନ ତାହାରି ପଛରେ ଧାଇଁ ଧାଇଁ ଏବେ ସେ ହାବୁଡେ ପଡ଼ିଲା । ତା ରକ୍ତରେ ସ୍ନାନ କରି କିଛି ମଧ୍ୟ ପାନ କଲେ ନିଜେ । ତୃପ୍ତ ହେଲା ଯୁଗ ଯୁଗ ଧରି ମନର ବାସନା । ଏଣିକି ସେ କେବଳ ଲୋକମାନଙ୍କର ମଙ୍ଗଳ ପାଇଁ ରୂପ ଧାରଣ କରିବେ । ମାନବ ମାନେ ତାଙ୍କରି ପୂଜା କରି ଧନୀ-ମାନୀ-ଜ୍ଞାନୀ ହେବେ । ସେ ବୀଣା ପୁସ୍ତକ ଧାରଣ ନକଲେ ମଧ୍ୟ ସରସ୍ୱତୀ ଭାବେ ପୂଜା ପାଇବେ । ସେହିଭଳି ଚତୁପାର୍ଶ୍ୱରେ ଷ୍ଟରୋଟି ହାତୀ ନଥାଇ ପଦ୍ମରେ ଉପବେଶନ ନକରି ମଧ୍ୟ ସେ ଲକ୍ଷ୍ମୀ ହୋଇ ଦରିଦ୍ରକୁ ଧନ ଦାନ କରିବେ—ତାଙ୍କ ବିରୋଧୀ ବ୍ୟକ୍ତିକୁ ମାତୃଭଳି ସ୍ନେହ କରୁଣା ନେଇ ସାଯୁଜ୍ୟ ପ୍ରଦାନ କରିବେ । ସେହିଭଳି ମସ୍ତକରେ ନରମୁଣ୍ଡ ମାଳ କିମ୍ବା ହାତରେ ସଦ୍ୟ ଛିନ୍ନ ଶିର ନଥିଲେ ମଧ୍ୟ ମହାକାଳର ଶକ୍ତି ରୂପେ ଦଣ୍ଡାୟମାନ ହୋଇ ସେ ହେବେ କାଳୀ ଭାବେ ଆରାଧିତା । ଶରତ୍ କାଳରେ ତାଂକର ବିଶେଷ ପୂଜା ହେବା ହେତୁ ସେ ଶାରଳା ନାମରେ ବନ୍ଦିତା ହେବେ ସମଗ୍ର ବିଶ୍ୱରେ ।

ସମଗ୍ର ଦେହ ତାଙ୍କର ରକ୍ତାକ୍ତ । ମସ୍ତକର କୃଷ୍ଣ କେଶ ଗୁଚ୍ଛ ଉପରେ ରକ୍ତଗୁଡ଼ାକ ଜମାଟବାନ୍ଧି ଥିଲି ଥିଲି ହେଉଥାଏ । ତାଙ୍କର କୃଷ୍ଣ ଅଙ୍ଗକାନ୍ତି ରକ୍ତରେ ଜୁଡ଼ୁବୁଡ଼ ହୋଇ ନାଲି ରଙ୍ଗରେ ରଞ୍ଜିତ । ମସ୍ତକ ଉପରୁ ଥପ୍ ଥପ୍ ହୋଇ ବୋହିପଡ଼ୁଥିବା ରକ୍ତ ନାକ ଦେଇ ତଳକୁ ଗଡ଼ିଆସିଲା ବେଳେ ନିଶ୍ୱାସ ଗ୍ରହଣ ଦ୍ୱାରା କିଛି ଉଦରକୁ ଯାଇଛି । କୃଷ୍ଣ ଯେତେବେଳେ ବିଷ୍ଣୁଙ୍କର ଅବତାର ସେତେବେଳେ କୃଷ୍ଣଙ୍କର ଉପାସିକା ଭାବେ ସେ ବୈଷ୍ଣବୀ ।

ବୈଷ୍ଣବୀ ହୋଇ ରକ୍ତପାନ କରିବା ମଧ୍ୟ ବିରୁଦ୍ଧ କାର୍ଯ୍ୟ । କିନ୍ତୁ ନାସିକା ଦେଇ ରକ୍ତପାନ କଲେ ସେ ଦୋଷ ଆଉ ରହେ ନାହିଁ । ନାସିକା ଦ୍ୱାରା ଆଘ୍ରାଣ ବସ୍ତୁ ଅମୃତ । ସେ ରକ୍ତ ହେଉ ବା ମଦ ହେଉ ନାସିକା ମଧ୍ୟଦେଇ ଉଦରକୁ ଯାଇଥିବା ହେତୁ ସେ ଅମୃତ ଭାବେ ଗୃହୀତ ।

ରଥ ଉପରେ ବସି ଆଉ ଥରେ ସେ ଲକ୍ଷ କଲେ ମୃତ ଦୁଃଶାସନକୁ । ଯେଉଁ ହାତ ତାର ତାଙ୍କୁ ଉଲଗ୍ନ କରୁଥିଲା ସଭାମଧ୍ୟରେ, ପୁଣି ଯେଉଁ ହାତ ତାଙ୍କ ମସ୍ତକର କେଶଗୁଚ୍ଛକୁ ଧାରଣ କରି ସଭାସ୍ଥଳକୁ ଟାଣି ଆଣିଥିଲା ସେ ହସ୍ତ ଆଉ ତା ଦେହରେ ସଂଲଗ୍ନ ହୋଇ ନାହିଁ । ଶ୍ୟେନପକ୍ଷୀ ସେ ଦୁଇଟିକୁ ନେଇ କେଉଁଠି ସୁଖରେ କ୍ଷୁଧା ମେଣ୍ଟାଉଥିବ । ହସ୍ତବିହୀନ ଦେହଟି ଗୋଟିଏ ପାହାଡ଼ ଭଳି ଦେଖା ଯାଉଛି । ଭୀମସେନ ହାତ ଦୁଇଟିକୁ କାନ୍ଧଠାରୁ ପୃଥକ କଲାବେଳେ ଦେହରୁ ରକ୍ତଗୁଡ଼ିକ ବାହାରି ଆସିଛି ସେହି କାନ୍ଧ ମଧ୍ୟ ଦେଇ । ଫଳରେ ଦୁଃଶାସନ ପଡ଼ିଥିବା ଭୂମି ପୂରାକ ରକ୍ତରେ ଜଡ଼ିଭୂତ ହୋଇଯାଇଛି । କି ବିକଟାଳ ଦେଖାଯାଉଛି ସତେ ଦୁଃଶାସନ ସେ ଦେହଟି । ମଲାବେଳେ ମୁହଁଟି ତାର ଯେଉଁଭଳି ମେଲା ହୋଇ ଦନ୍ତପନ୍ତୀ ଗୁଡ଼ିକ ପଦାକୁ ବାହାରି ମୁହଁଟିକୁ ଭୟଙ୍କର କରି ଦେଇଛି, ସେହିଭଳି ଆଖି ଦୁଇଟି ବିସ୍ଫାରିତ ହୋଇ ଭୟଙ୍କର ଦେଖାଯାଉଛି । ସାରା ଅଙ୍ଗକୁ ଢ଼ାଙ୍କି ରଖିଥିବା ତାର ଯୋଦ୍ଧା ପୋଷାକ ଭୀମ ତା ଉପରେ ଚଢ଼ି ମର୍ଦ୍ଦନ କଲାବେଳେ ପୋଷାକଗୁଡ଼ାକ ବଡ଼ ଅପସନ୍ନ ହୋଇ ଯାଇଛି ।

ମନେପଡ଼ିଲା ତାଙ୍କର ଅନେକକାଳ ତଳର କଥା । ସେତେବେଳେ ସତ୍ୟଯୁଗ ଆରମ୍ଭ ହେବାକୁ ଯାଉଥାଏ । ତା' ପୂର୍ବର ଚଣ୍ଡୀ ଶେଷ ହୋଇ ଯାଇଛି । ଗୋଟିଏ ଗୋଟିଏ କଣ୍ଡାରେ ଗୁହେରି ଯୁଗ ଭୋଗହୁଏ । ସତ୍ୟଯୁଗ ସତରଲକ୍ଷ ଅଠାଇଶ ସହସ୍ର ବରଷ, ତ୍ରେତାଯୁଗ ବାରଲକ୍ଷ ଛୟାଣୋଇ ସହସ୍ର । ଏହାପରେ ଆସେ ଦ୍ୱାପର ଏ ଧରାରେ ଅଠରଲକ୍ଷ ଚଉଷଠୀ ସହସ୍ର ବର୍ଷ ଧରି ରାଜୁତି କରିବାକୁ । ତାପରେ ଆସେ କଳି । କଳିଯୁଗ ଚାରିଲକ୍ଷ ବତିଶି ସହସ୍ର ବରଷ ଭୋଗ ହେଲା ପରେ ମହାପ୍ରଳୟ ଆସିଯାଏ । ଏହାକୁ ଗଣ୍ଡାପ୍ରେ

ବୋଲି କୁହନ୍ତି । ପ୍ରତ୍ୟେକ ଯୁଗରେ ଗୋଟିଏ ମନୁଙ୍କ ଜୀବନ କାଳ । ସେହି-ଭଳି ଚଉଦ ମନୁରେ ଗୋଟିଏ କଳ୍ପ । ଚଉଦ କଳ୍ପ ହେଉଛି ଗୋଟିଏ ଉହାଣେକର ପରିମାଣ । ସେହିଭଳି ଅଠର ଉହାଣେକ ହେଲେ ଗୋଟିଏ ଚନ୍ଦ୍ରଙ୍କର କାଳ ଶେଷ ହୁଏ । ଷୋଳଟି ଚନ୍ଦ୍ରଙ୍କ କାଳରେ ଗୋଟିଏ ଇନ୍ଦ୍ରଙ୍କ ସ୍ଥିତି । ପିତାମହ ଯେଉଁ ବ୍ରହ୍ମା, ସେ ଅନନ୍ତକାଳ ପାଇଁ ଆସନ୍ତି ନାହିଁ । ଏହିପରି ଇନ୍ଦ୍ରଙ୍କ କାଳ ହେଉଛି ପିତାମହଙ୍କର ଗୋଟିଏ ଦିନ ସହିତ ସମାନ । ବ୍ରହ୍ମାଙ୍କର ଶତେହ ଆଠ ଦିନରେ ନିଜେ ସେ ନାଶ ଯାଆନ୍ତି ।

ପ୍ରବାହିତ ବ୍ରହ୍ମା ନାଶ ଯାନ୍ତି । କେବଳ ଅଣାକାର ପୁରୁଷ ବସିଥାନ୍ତି ବାହୁ ଟେକି । ଆକାଶର ନଳିମା ଗାଢ ହୋଇ ତାଙ୍କ ମୁହଁରେ ଲହଡ଼ି ଖେଳୁଥାଏ । ତାଙ୍କର ହସ୍ତ ନାହିଁ, ପଦ ନାହିଁ, କିଛି ନାହିଁ, ଶୂନ୍ୟ, ଶୂନ୍ୟ ଅନନ୍ତ ଶୂନ୍ୟ । ଯେହି ଅନନ୍ତ ଶୂନ୍ୟ ରୂପ ହେଲେ ମଧ୍ୟ ସେହି ରୂପ ଅରୂପର । ସବୁ କାଳରେ ସେହି ଅଣାକାର ପୁରୁଷ ଅରୂପ ରୂପରେ ଅବସ୍ଥାପିତ ଶୀଳ କନ୍ଦରରେ । ତାଙ୍କର ପାଖରେ ମହାଶକ୍ତି ଷୂଦ୍ର ଭାବେ ଅବସ୍ଥିତ । ଅଣାକାର ଏବଂ ନିରାକାର ପ୍ରତ୍ୟେକ ହେଲେ ମଧ୍ୟ ଦୁଇଭଳି । ନିରାକାର ଅଣାକାରଙ୍କୁ ଜଣାଇଲେ, ମହା ପ୍ରଳୟରେ ସମସ୍ତ କିଛି ଧ୍ୱଂସ ପାଇଯାଇଛି । ନୂତନ ସୃଷ୍ଟି ନ ହେଲେ ଚଳିବ ନାହିଁ ।

ଶ୍ରୀବତ୍ସ ନାମକ ମହାନଦୀରେ ଫେଣ ଉପରେ ଅଣାକାର ବସ୍ତୁ ଚିନ୍ତା ମଗ୍ନ । ତାଙ୍କ ସୀମ ସ୍ଥାନରେ ବସି ଧବଳାଙ୍ଗୀ ସୁ ସ୍ୱରରେ ବୀଣା ବଜାଉଥାନ୍ତି । ବାରମ୍ବାର ନିରାକାର ମହାପ୍ରଳୟ କଥା ଜଣାଇଲା ପରେ ଅଣାକାର ବସ୍ତୁ ଆଖିଖୋଲି ଚାହିଁଲେ । ଯଦି ମହା ପ୍ରଳୟରେ ସବୁକିଛି ଧ୍ୱଂସ ହୋଇଛି, ତେବେ ପୁଣି ନୂତନ ସୃଷ୍ଟି କରିବାକୁ ଗୋଟିଏ ବ୍ରହ୍ମା ହେଲେ ତ ଚଳିବ ନାହିଁ ? ଅଣାକାର ଚିନ୍ତା କରୁ କରୁ ତାଙ୍କ ପାଦରୁ ପନ୍ଦରଟି ବ୍ରହ୍ମା ଜନ୍ମ ହେଲେ । ସେମାନେ ବହୁମୁଖ ବିଶିଷ୍ଟ ଓ ବହୁ ହାତ ବିଶିଷ୍ଟ ।

ପଞ୍ଚଦଶ ବ୍ରହ୍ମାଙ୍କର ନାମ ଅଣାକାର ଦେଲେ, ସନକ-ସନନ୍ଦ-ସନାତନ-ଅନନ୍ତ-ଶୋଷକ-ନିରଳସ-ଚନ୍ଦ୍ରକେଶ-ଅଜତାଳ-ଶୂଦ୍ରକ-ଧାତ୍ରୁଜ-ପଦ୍ମଜୋନୀ

-ବାମଗୁରୁ-ମନୁଧାତାଦ ଏହି ପଞ୍ଚଦଶ ବ୍ରହ୍ମାଙ୍କୁ ସୃଷ୍ଟି ଅଣାକାର କହିଲେ ତୁମେ ବର୍ତ୍ତମାନ ଏହି ପ୍ରଳୟ ଜଳକୁ କଳନା କରି ଫେରି ଆସ ।

ବ୍ରହ୍ମାମାନେ ପ୍ରଳୟ ଜଳ ମଧ୍ୟରେ ନବକୋଟି ବର୍ଷ ଘୂରି ବୁଲିଲେ । ସେହି ଭୟଙ୍କର ପ୍ରଳୟ ଜଳ ତାଙ୍କୁ ଆଣ୍ଠୁଏ ଲେଖାଁ ହେଉଥାଏ । ସେହି ଜଳରେ ବୁଲି ବୁଲି କେଉଁଠୁ ସେମାନେ ଆସିଲେ ତାହା ଜାଣି ପାରିଲେ ନାହିଁ । ଦିନେ ନୁହେଁ କି ମାସେ ନୁହେଁ ବର୍ଷ ବର୍ଷ ହୋଇ ନବକୋଟି ବର୍ଷ ନବକୋଟି ବର୍ଷ ବିତିଗଲା ପରେ ସେମାନଙ୍କର ସ୍ମରଣ ଶକ୍ତି ମଧ୍ୟ ହ୍ରାସ ପାଇ ଆସିଲା ।

ଏକଦା ଅଣାକାରଙ୍କର ମନେପଡ଼ିଲା ତାଙ୍କଠାରୁ ଉତ୍ପନ୍ନ ହୋଇ ପଞ୍ଚଦଶ ବ୍ରହ୍ମା ପ୍ରଳୟ ଜଳକୁ କଳନା କରିବାକୁ ଯାଇଥିଲେ, ମାତ୍ର ସେମାନେ ଏତେଦିନ ଯାଏ ଗଲେ କୁଆଡ଼େ । କଣ ନବକୋଟି ବର୍ଷ କଳନା କରି କରି ଜଳର ଆଦି ଅନ୍ତ ପାଉନାହାନ୍ତି ? ସେମାନେ ଯଦି ଏହି ସାମାନ୍ୟ କାର୍ଯ୍ୟ କରିବାକୁ ଅକ୍ଷମ ହେବେ ତେବେ କି ସୃଷ୍ଟି ସେମାନେ ସର୍ଜନା କରିବେ ?

ଅଣାକାର ବସ୍ତୁ ଅନାଇଲେ ଧବଳାଙ୍ଗୀଙ୍କୁ । ଧବଳାଙ୍ଗୀ ସେ ପର୍ଯ୍ୟନ୍ତ ସୁସ୍ୱରରେ ବୀଣା ବଜାଇ ଗୃଲିଥାନ୍ତି । ଅଣାକାର ତାଙ୍କୁ ଅନାଇବା ଦେଖି ସେ ବୀଣା ଥୋଇ ପ୍ରଶ୍ନକଲେ, ମୋତେ କଣ କିଛି କରିବାକୁ ଆପଣ ଇଚ୍ଛା କରୁଛନ୍ତି ?

ଅଣାକାର, କହିଲେ ଦୀର୍ଘ କୋଟି କୋଟି ବର୍ଷହେଲା ମହାପ୍ରଳୟ ହୋଇ ବିଶ୍ୱ ଜଳମଗ୍ନ । ପ୍ରଳୟ ପରେ ନୂତନ ସୃଷ୍ଟି ପାଇଁ ପନ୍ଦରଜଣ ବ୍ରହ୍ମା ପାଦରୁ ଜାତ କରାଇଲି । ସେମାନଙ୍କୁ କହିଲି ପ୍ରଥମେ ତୁମ୍ଭେମାନେ ପ୍ରଳୟ ଜଳକୁ କଳନା କରି ଆସ ବୋଲି । ପ୍ରଳୟ ଜଳକୁ କଳନା କରି କରି ନବ କୋଟି ବର୍ଷ ବିତିଗଲେ ମଧ୍ୟ ସେମାନଙ୍କର କଳନା କାର୍ଯ୍ୟ କଣ ଏ ପର୍ଯ୍ୟନ୍ତ ସରିଲା ନାହିଁ ? ଟିକିଏ ଦେଖିଲ ସେମାନେ କଣ ଆଉ ବାଟ ଭୁଲିଗଲେ ?

ପୁରୁଷ ଶୂନ୍ୟ । କରିବା ଶକ୍ତି ପୁରୁଷର ନାହିଁ । କ୍ରିୟାଶୀଳ ଏକମାତ୍ର ଶକ୍ତି । ବିନା ଶକ୍ତିରେ କେଉଁଠି କଣ କିଛି କାର୍ଯ୍ୟ ହେଲାଣି ?

ଉଠିଲେ ବାକ୍ୟଦେବୀ ପଞ୍ଚଦଶ ବ୍ରହ୍ମାଙ୍କୁ ଖୋଜିବା ପାଇଁ । ମହା-ଶୂନ୍ୟରେ ତଡ଼ିତ୍‌ଭଳି ଖେଳି ଗଲେ ମହାଶକ୍ତି । କିଛି ଦୂରରେ ଦେଖିଲେ ଜଳ ମଧ୍ୟରେ ପନ୍ଦରଜଣ ବ୍ରହ୍ମା ଘୂରି ବୁଲୁଛନ୍ତି । ମହାପ୍ରଳୟର ଅଗାଧଜଳ ସେମାନଙ୍କୁ ମାଡ଼ ଆଣୁଏ ଲେଖାଁ ହେଉଛି ।

ମହାଶୂନ୍ୟରୁ ଅବତରଣ କରି ସେହି ପନ୍ଦରଜଣଙ୍କ ସମ୍ମୁଖରେ ଛିଡ଼ା ହେଲେ ମହାଶକ୍ତି । ବ୍ରହ୍ମାମାନେ ଲକ୍ଷକଲେ ଟିକିଏ ଦୂରରେ କିଏ ଜଣେ ଶୁଭ୍ର ବର୍ଣ୍ଣା ନାରୀ ଦଣ୍ଡାୟମାନ । ତାର ସ୍ୱରୂପ ଅତୀବ ଚମତ୍କାର । ମସ୍ତକ ଉପରେ ନୀଳ କୁଞ୍ଚିତ କେଶ । ଧନୁଭଳି ଦୁଇଟି ଭ୍ରୂଲତା । ଲମ୍ବା ଲମ୍ବା କି ସୁନ୍ଦର ଆଖି ଦୁଇଟି । ତୀକ୍ଷ୍ଣ ନାସିକାର ଶୋଭା ଅବର୍ଣ୍ଣନୀୟ । ନାକ ତଳକୁ କି ସୁନ୍ଦର ଅଧର । ଅଧରର ବର୍ଣ୍ଣ ଅତି ମନୋହର । ତା ମଧ୍ୟରୁ ଯେଉଁ କ୍ଷୀଣ ହାସ୍ୟ ନିର୍ଗତ ହେଉଛି ସେ ହସ ଲକ୍ଷକରି ଏହି ପଞ୍ଚଦଶ ବ୍ରହ୍ମାଙ୍କ ହୃଦୟରେ ଏକ ଅଜଣା ଶିହରଣ ଖେଳି ଗଲା । ପୁଣି ବକ୍ଷୋଜର ଶୋଭା ଅତି ଚମତ୍କାର ।

ସେମାନେ ମନେକଲେ ଏହି ନାରୀ ଯଦି ତାଙ୍କୁ ଥରୁଟିଏ ଆଲିଙ୍ଗନ କରନ୍ତା ତେବେ ଏ ଯେଉଁ ପର୍ଯ୍ୟଟନ ହେଲା ସେମାନେ ଘୂରି ଘୂରି କ୍ଳାନ୍ତ ବୋଧ କରୁଛନ୍ତି ତାହା ମେଣ୍ଟି ଯାଆନ୍ତା । ସାର୍ଥକ ହୁଅନ୍ତା ମଧ୍ୟ ସେମାନଙ୍କର ଜୀବନ ।

ସେହି ନାରୀର ସୌନ୍ଦର୍ଯ୍ୟ ସେମାନେ ଯେତିକି ଲକ୍ଷ କଲେ ସେତିକି କାମାଶକ୍ତ ହୋଇପଡ଼ିଲେ । ପ୍ରତ୍ୟେକ ମୁଖରେ ଆଙ୍ଗୁଠି ଟେକି ଘେରିଗଲେ ସେହି ମହାଦେବୀଙ୍କୁ । ସେମାନଙ୍କର କଳ କଳା ନାଦ ମହାଦେବୀଙ୍କୁ ବିରକ୍ତ ଲାଗିଲା । ସେ କିଛି କହିବା ପୂର୍ବରୁ ସେମାନେ ଏକ ସ୍ୱରରେ କହି ଉଠିଲେ ତୁମେ ଆମକୁ ରତିଦାନ କର ।

ଦେବୀ କହିଲେ, ଆରେ ଦୁଷ୍ଟ ! ତୁମେ ଚିହ୍ନି ପାରୁନାହଁ ମୋତେ । ପୁରୁଷ କେବେ କାହାକୁ ଜନ୍ମ ଦେଇ ପାରେ ନାହିଁ । ତୁମେମାନେ ଅଣାକାରଙ୍କ ପଦରୁ ମୋ ଠାରୁ ଜନ୍ମ ଲଭ କରିଛ । ତୁମେ ତୁମ ମା'କୁ ରତି ମାଗୁଛ ଟିକିଏ ଲାଜ ମାଡ଼ୁ ନାହିଁ ?

କାମାଙ୍କ ଭେକର ତୃତୀୟରେ ଛକନ କାହିଁ ? ସେ କ ବୁଝିବେ ମହାଦେବୀ କଣ କହୁଛନ୍ତି ? ସେ ବୃତ୍ତାନ୍ତ ଦେବୀଙ୍କୁ, ତାଙ୍କର ସୁନ୍ଦର ଦେହକୁ । ଗୋଟିଏ ମୁହୂର୍ତ୍ତ ସେମାନେ ବିଳମ୍ବ କରିବାକୁ ରାଜି ନାହିଁ । କାମଶର ବିଦ୍ଧ ମାନବ ଭଳି ସେମାନେ କାମପୀଡ଼ାରେ ଅସ୍ଥିର ।

ଅବସ୍ଥା ଲକ୍ଷ୍ୟ କରି ଦେବୀ ଭୟଙ୍କର ହସିଗଲେ ଓ ହୁଁକାରରେ ଦଶଦିଗ ପ୍ରକମ୍ପିତ କରିଦେଲେ । ସେହି ହୁଁକାର ଶବ୍ଦରେ ତାଙ୍କ ଦେହରୁ ଏକ କନ୍ୟା ଜାତହେଲା ।

ଜନ୍ମ ହେବା ମାତ୍ରେ ଦେବୀ ତାଙ୍କୁ ପଚାରିଲେ କିଏ ତୁ ? ସେ ହସି ହସି କହିଲା ମୁଁ କେତୁକା । ହର୍ଷିତ ହେଲେ ଦେବୀ କେତୁକାକୁ ଦେଖି । କେତୁକା କହିଲେ ମାତ ! ଜନ୍ମ ଯେତେବେଳେ ଦେଲ, ସେତେବେଳେ କ୍ଷୁଧା ଶାନ୍ତି ପାଇଁ ଖାଦ୍ୟ ଦିଅ ।

ସଙ୍ଗେ ସଙ୍ଗେ ଦେବୀ ସେହି ପଡ଼ର ଜଣ ବ୍ରହ୍ମଙ୍କୁ ଦେଖାଇ ଦେଲେ । ଏମାନଙ୍କୁ ତୁ ଖାଦ୍ୟରୂପେ ଗ୍ରହଣ କର । ଏଥି ମଧ୍ୟରୁ କେଉଁଟିକୁ ମଧ୍ୟ ବାଦ ଦେବୁ ନାହିଁ ।

ଭୟଙ୍କର ମୂର୍ତ୍ତି ଧାରଣ କଲେ ସଙ୍ଗେ ସଙ୍ଗେ କେତୁକା । କହୁ କହୁ ତାଙ୍କର ମସ୍ତକ ଶୂନ୍ୟରେ ଲାଗିଗଲା । ବିକଟାଳ ମୁଖ, କୋଟରଗତ ଚକ୍ଷୁ, ଖାଙ୍କର କେଶ, ଲହ ଲହ ଜିହ୍ୱା ଦେଖି ବ୍ରହ୍ମାମାନେ ଭୟରେ ଏଣେ ତେଣେ ପଳାଇବାପାଇଁ ଲାଗିଲେ । ମାତ୍ର ସେମାନେ ଯିବେ କୁଆଡ଼େ ? ସହୁଭଳ ଭୟଙ୍କର ମୂର୍ତ୍ତି ଧରି ଧାଇଁଛି କେତୁକା । ସମାନ୍ୟ ଟିକିଏ ମନ୍ଥର ହୋଇଗଲେ ଜୋଜନ ଜୋଜନ ଲମ୍ବା ତାର ହାତ ଦୁଇଟିକୁ ବଢ଼ାଇ କବଳିତ କରୁଛି ଏକ ପରେ ଏକ ବ୍ରହ୍ମାଙ୍କୁ । ହାତ ମୁଠାରେ ପଡ଼ିଲା ମାତ୍ରେ ଭଡ଼ଆଣି ପାଟିରେ ଭରି ଦେଉଛି । ଲମ୍ବା ଲମ୍ବା ତୀକ୍ଷ୍ଣ ଦାନ୍ତରେ ରଡ଼ମଡ଼ ରଡ଼ମଡ଼ କରି ଚୋବାଇ ଗିଳି ଦେଉଛି ସେ । ମୃତ୍ୟୁକାଳିନ ସମୟରେ ବ୍ରହ୍ମାମାନଙ୍କର ଚିତ୍କାର ଗଗନ ପବନ ମୁଖରିତ କରୁଛି ।

ତିଉଁ ଜଣ ବ୍ରହ୍ମାଙ୍କୁ ଖାଇବାକୁ ଲଗିଗଲ କେଉଁକାକୁ ତିଉଁ ଅଦ୍ଭୁତ ବରଷ । ଶୁଦ୍ରକ ବ୍ରହ୍ମା ହେଉଛନ୍ତି ଶେଷ ବ୍ରହ୍ମା । ତାଙ୍କର ମାତ୍ର ପାଞ୍ଚୋଟି ମସ୍ତକ । ଅନ୍ୟମାନେ ଥିଲେ କିଏ ସହସ୍ରେ, କିଏ ପାଞ୍ଚଶତ, ଏକଶତ ଆଦ ।

ଶୁଦ୍ରକ ବ୍ରହ୍ମା ଧାଉଁଛନ୍ତି, ତାଙ୍କ ପଛରେ କେଉଁକା । ସେ ଧାଇଁ ଧାଇଁ କ୍ଳାନ୍ତ ହୋଇ ପଡ଼ିଲେଣି । ହୁଏତ ଆଉ ଅଳ୍ପ ସମୟ ପରେ ସେ କବଳିତ ହେବେ କେଉଁକାଙ୍କର । ବଞ୍ଚିବାକୁ ତାଙ୍କର ଆପ୍ରାଣ ଚେଷ୍ଟା । ସେହିଭଳି ଚେଷ୍ଟାକର ଚଉଦଜଣ ତା ମୁଖରେ ନିଃଶେଷ ହୋଇଗଲେଣି । ଅଉ ବାକି ସେ । ସେ ବା ଆଉ କେତେ ସମୟ ଧାଇଁବ ?

ହଠାତ୍ ଆଗରେ ଏକ ବିରାଟ ପୁରୁଷକୁ ଦେଖିବାକୁ ପାଇଲେ ଶୁଦ୍ରକ ବ୍ରହ୍ମା । ସେ ପୁରୁଷ ଅଣ ଆକାରର । ପ୍ରାଣ ବିକଳରେ ସେ ଡାକ ପୁଡ଼ିଲେ ରକ୍ଷାକର, ରକ୍ଷାକର ରକ୍ଷାକର ।

ଅଣାକାର ହେଲେ ମଧ୍ୟ ଆକାର ଭଳି ସେ ଘୁରିଲେ ଚମକାର ଦୁଇଟି ଆଖି ମେଲି । ବର୍ତ୍ତିତ ବର୍ତ୍ତୁଳ ଅଧରରୁ ହଠାତ୍ ବାହାରି ଆସିଲା, କିଏ ତୁମେ—କାହିଁକି ଏଭଳି ଚିତ୍କାର କରୁଛ—କିଏ ବା ତୁମକୁ ମାରିପକାଉଛି ?

ଉତ୍ତରରେ ଶୁଦ୍ରକ ବ୍ରହ୍ମା କହିଲେ, ମୁଁ ହେଉଛି ଶୁଦ୍ରକ ବ୍ରହ୍ମା । ଅଣାକାର ପୁରୁଷଙ୍କ ଠାରୁ ଜନ୍ମଲାଭ କରି ସୃଷ୍ଟି ରଚନା ନିମିତ୍ତ ଆମେ ପଞ୍ଚଦଶ ବ୍ରହ୍ମା ପ୍ରଳୟ ଜଳରୁ କଳନା କରିବାକୁ ଯାଇଥିଲୁ । ଏହି ଉପୁଙ୍କର ନାରି ଆମ ଚଉଦ ଜଣକୁ ଖାଇ ମୋତେ କବଳିତ କରିବାକୁ ଧାଉଁଛି । ମୋତେ ରକ୍ଷା କରନ୍ତୁ ।

ଅଣାକାର ପୁରୁଷ ହାତ ଉପରକୁ ଟେକି ଅଭୟ ଦେଲେ ଶୁଦ୍ରକ ବ୍ରହ୍ମାଙ୍କୁ ।

ଆଦିନାରି ସେହି ଧବଳାଙ୍ଗୀ ମହାଦେବୀ ସଙ୍ଗେ ସଙ୍ଗେ ସେଠାରେ ପହଞ୍ଚି କହିଲେ, ଏ ମୂର୍ତ୍ତ ମୋତେ କଙ୍କାଳ କଲେ ଶୃଙ୍ଗାର ପାଇଁ । ପଞ୍ଚଦଶ ବ୍ରହ୍ମା ମୋ ଚତୁର୍ପାର୍ଶ୍ୱରେ ବେଢ଼ି ଏଭଳି କଳ କଳା ଧ୍ୱନି ଦେଲେ ଯାହାକି

ମୁଁ ସମ୍ଭାଳି ପାରିଲି ନାହିଁ । ମୁଁ ମୋ ଦେହରୁ ଜନ୍ମ କରାଇଲି ଏହି କେତୁକାଙ୍କୁ । ମୋ ଆଦେଶରେ କେତୁକା ଚଉଦଜଣ ବ୍ରହ୍ମାଙ୍କୁ ଗ୍ରାସ କରି ସାରିଛି । ଏହି ଶେଷ ବ୍ରହ୍ମାଟି ସେ କବଳିତ କଲେ ତାର କାର୍ଯ୍ୟ ଶେଷ ହେବ ।

ଅଣାକାର କହିଲେ, ଏ ଯେତେବେଳେ ମୋର ଶରଣ ପଶିଲଣି, ସେତେବେଳେ ତୁମେ ତାକୁ କ୍ଷମାକର । ତୁମେ ଯେତେବେଳେ ତୁମର କନ୍ୟା କେତୁକାକୁ ଏ ସମସ୍ତଙ୍କୁ ଭକ୍ଷିବା ପାଇଁ କହୁଛ, ସେତେବେଳେ ଏ ନିଶ୍ଚୟ କେତୁକାଙ୍କର କବଳିତ ହେବ । ମାତ୍ର ତାହା ଏତେ ଶୀଘ୍ର ନୁହେଁ । ବର୍ତ୍ତମାନ ସତ୍ୟଯୁଗର ଆରମ୍ଭ କାଳ, ଏହାପରେ ଆସିବ ତ୍ରେତୟା । ତ୍ରେତୟା ପରେ ପରେ ଆସିବ ଦ୍ୱାପର । ସେହି ଦ୍ୱାପରରେ ଏ ଧୃଶାସନ ନାମରେ କୁରୁ-କୁଳରେ ଜନ୍ମ ଗ୍ରହଣ କରିବ । ସେତେବେଳେ କେତୁକା ଦ୍ରୋପଦୀ ନାମ ଧାରଣ କରି ମର୍ତ୍ତ୍ୟରେ ଅବତାର ଗ୍ରହଣ କରିଥିବେ । ସେ ହୋଇଥିବେ ପାଞ୍ଚ ଜଣଙ୍କ ଗୃହିଣୀ । ତାର ଚଉଦ ଭାଇଙ୍କୁ ଖାଇଥିବା ହେତୁ ଏହି ଶୂଦ୍ରକ ବ୍ରହ୍ମା ସେତେବେଳେ ଦ୍ରୋପଦୀଙ୍କୁ ସଭାକୁ ତାଙ୍କ କେଶଧରି ଟେକି ନେବ । ସଭାରେ ସମସ୍ତଙ୍କ ଆଗରେ ତାଙ୍କୁ ଉଲଗ୍ନ କରିବ । ସେଥିପାଇଁ ଦ୍ରୋପଦୀ କେଶ ମୁକୁଳିତ କରି ରହିବେ । ସେହି ପଞ୍ଚପତିଙ୍କ ମଧ୍ୟରୁ ଭୀମ ନାମକ ପତି କୁରୁକ୍ଷେତ୍ର ସମର ପ୍ରାଙ୍ଗଣରେ ଧୃଶାସନର ହାତ ମୋଡ଼ି ଦେହରୁ ଉପାଡ଼ି ସେହି ରକ୍ତରେ ଦ୍ରୋପଦୀଙ୍କ କେଶ ପଖାଳିବ । ସେହି ସମୟରେ ଏହାର ରକ୍ତ ଦ୍ରୋପଦୀ ପାନ କରି ତୃପ୍ତ ହେବେ ।

ସରିଗଲା ଗୋଟାଏ ପର୍ବ । ସେହି ଆଦ୍ୟମାତାଙ୍କ ଆଦେଶ ସେ ଏତେ ଦିନ କରେ ପାଳନ କରିଛନ୍ତି । ଏତେଦିନ ଶୂଦ୍ରକ ବ୍ରହ୍ମା ତାଙ୍କୁ ଠକି ଠକି ଆସିଛି । ପ୍ରତି ଯୁଗରେ ସେ ଯେଉଁଭଳି ଜନ୍ମପରେ ଜନ୍ମ ହୋଇ ଗ୍ଭଲିଛି ତାଙ୍କ କବଳରୁ ରକ୍ଷା ପାଇବା ପାଇଁ ସେହିଭଳି ସେ ମଧ୍ୟ ଅବତାର ହୋଇ ଗ୍ଭଲିଛନ୍ତି ପ୍ରତି ଯୁଗରେ । ସତ୍ୟ ଯୁଗରେ ସେହି ଶୂଦ୍ରକ ବ୍ରହ୍ମା କେତୁ ମଙ୍ଗଳ ରୂପରେ ଜନ୍ମ ଗ୍ରହଣ କଲେ । ତ୍ରେତୟାରେ ସେ ପୁଣି ହେଲେ ବାଳୀ ସୁଗ୍ରୀବ । ଦ୍ୱାପରରେ ସେ ଦୁହେଁ ଜନ୍ମ ହୋଇଥିଲେ ଭୀମ ଧୃଶାସନ ନାମ ଧାରଣ କରି ।

ସେହି ଅଣାକାର ବସ୍ତ୍ରଙ୍କ ଆଦେଶରେ କେତୁକା ରୂପ ପରିତ୍ୟାଗ କରି ସତ୍ୟଯୁଗରେ ଏକବଳା ପାଙ୍ଗଣ ସେ ହେଲ । ଯେତେବେଳେ ତ୍ରେତୟା ଯୁଗ ପ୍ରବେଶ କଲ ଧରାରେ, ସେତେବେଳେ ସେ ହେଲେ ଇନ୍ଦ୍ରଙ୍କ ପତ୍ନୀ ଶଚୀ । ଏକବନା ପାଙ୍ଗଣ ହୋଇ ସ୍ୱେବର୍ଣ୍ଣ ପାଟୋଳୀ ବସ୍ତ୍ର ପଞ୍ଚାବନ କୋଟିର ଅଧିକାରିଣୀ ହୋଇ ପୁଣ୍ୟକୁଟୀ ଅଶ୍ରମରେ ବାସ କରୁଥିଲେ । ଏକଦା ଆଦିତ୍ୟ ଦେବତା ତାଙ୍କ ପୁନ ଶନିଙ୍କ କନ୍ୟାର ବିବାହ ଲଗି ସେ ବସ୍ତ୍ର ନେବା ପାଇଁ ପ୍ରାର୍ଥୀ ହେଲେ । ପାଙ୍ଗଣଙ୍କର ମନେଥାଏ ତାଙ୍କୁ ଦ୍ୱାପର ଯୁଗରେ ଧୂଶାସନ ସଭା ମଧ୍ୟରେ ବିବସନ କରିବ । ତେଣୁ ସେ କହିଲେ, ମୁଁ ଏ ବସ୍ତ୍ର ସବୁ ଦେବାକୁ ରାଜ ଗୋଟିଏ ସର୍ତ୍ତରେ, ତାହା ହେଉଛି ଯେତେବେଳେ ଦ୍ୱାପର ଯୁଗରେ ଧୂଶାସନ ମୋତେ ଉଲଗ୍ନ କରିବାକୁ ଯିବ ସେତେବେଳେ ଏହି ବସ୍ତ୍ର ସବୁ ମୋତେ ଫେରାଇ ଦେବ । ଆଦିତ୍ୟ ତାଙ୍କ କଥାରେ ଏକମତ ହୋଇ ସେହି ବସ୍ତ୍ର ସବୁ ନେଇ ଗଲେ ।

ମାତା କପିଳାଙ୍କ କଥା ତାଙ୍କର ମନେପଡ଼ିଗଲ । ତାଙ୍କର ସେତେ-ବେଳେ ବିକୃତ ଅବସ୍ଥା ଏକଦା ସେ ଦେଖିଲେ ମାତା କପିଳା ଗାଈ ରୂପରେ ଯାଉଥିବା ବେଳେ ତାଙ୍କ ପଛରେ ନିରଞ୍ଜନ ପୁରୁଷ ପାଞ୍ଚଟି ଷଣ୍ଢ ରୂପରେ ଧାଉଁଛନ୍ତି । ତାହା ଦେଖି ସେ ମାତାଙ୍କୁ କହିଲେ ମାତା ତୁମର ଏ କି ପ୍ରକାର ଗତି । ତୁମେ ଏକ ଥିଲ ବେଳେ ତୁମ ଭାଇ ପାଞ୍ଚଟି ଷଣ୍ଢ ହୋଇ ତୁମ ପଛରେ ଧାଉଁଛନ୍ତି କାହିଁକି ? ମାତ୍ର ଏତିକେ କଥାରେ ରାଗିଗଲେ ମାତା କପିଳା, ସେ କ୍ରୋଧରେ କହିଲେ, ତୁ ମୋତେ ଯାହା କହିଲୁ ତାହା ତୋତେ ହିଁ ପ୍ରାପ୍ତ ହେଉ । ଦ୍ୱାପର ଯୁଗରେ ତୁ ଦ୍ରୌପଦୀ ରୂପେ ଅଗ୍ନି କୁଣ୍ଡରୁ ଉତ୍ପନ୍ନ ହେବୁ । ତୋର ପାଞ୍ଚଟି ପତି ହେବେ । ସେ ଜନ୍ମରେ ତୋତେ ଧୂଶାସନ ଉଲଗ୍ନ କରିବ ।

ତ୍ରେତୟା ଯୁଗରେ ସେ ସ୍ୱର୍ଗର ପାଟରାଣୀ ଇନ୍ଦ୍ରଙ୍କ ପତ୍ନୀ ଶଚୀ ହୋଇ ଥିଲେ । ଏକଦା ଭୃଗୁ ମହାଋଷିଙ୍କ ସହିତ ଇନ୍ଦ୍ରଙ୍କର ବିବାଦ ହେଲ । ବିଜ୍ଞା-

ଘାତରେ ଇନ୍ଦ୍ର ଭୂତଙ୍କୁ ବଧକଲେ ପୁତ୍ରର ମୃତ୍ୟୁ ସମ୍ବାଦ ଶୁଣି କ୍ରୋଧରେ ଧାଇଁ ଆସିଲେ ତାଙ୍କ ପିତା ତ୍ୱଷ୍ଟା ମହର୍ଷି । ନାରଦ ତ୍ୱଷ୍ଟାଙ୍କ ସ୍ୱର୍ଗାଗମନ ଦେଖି ଇନ୍ଦ୍ରଙ୍କୁ ସମ୍ବାଦ ଦେଲେ ଶୀଘ୍ର ସ୍ୱର୍ଗ ଛାଡ଼ି ଚାଲି ଯିବାପାଇଁ । ପୁତ୍ର ଶୋକରେ ଅଧୀର ହୋଇ କ୍ରୋଧରେ ତ୍ୱଷ୍ଟା ଆସୁଥିବା ସମ୍ବାଦ ପାଇ ନିଜର ପଞ୍ଚାତ୍ମାକୁ ପାଞ୍ଚଜଣଙ୍କ ଠାରେ ସମର୍ପି ଦେଲେ ଇନ୍ଦ୍ର । ଏକ ଆତ୍ମା ଧର୍ମଙ୍କ ଠାରେ ରଖିଲେ, ଅନ୍ୟ ଏକ ଆତ୍ମା ପବନକୁ ଦେଲେ । ଗୁପ୍ତରେ ନିଜର ଅନ୍ୟ ଏକ ଆତ୍ମା ଶୂନ୍ୟରେ ଅଶରୀର କରି ରଖିଲେ । ଅବଶିଷ୍ଟ ଦୁଇଟି ଆତ୍ମାଙ୍କୁ ଅଶ୍ୱିନୀ କୁମାରଙ୍କ ଠାରେ ସେ ରଖିଥିଲେ । ସେହି ଆତ୍ମା ଗୁଡ଼ିକ ଦ୍ୱାପର ଯୁଗରେ କୋନ୍ତୀ, ମାଦ୍ରୀଙ୍କୁ ପ୍ରସନ୍ନ ହୋଇ ତାଙ୍କରି ଠାରୁ ଆତ୍ମପ୍ରକାଶ କଲେ ପାଣ୍ଡବ ରୂପରେ । ପାଣ୍ଡବମାନଙ୍କୁ ଯେ ଯାହା କୁହନ୍ତୁ ଦ୍ରୋପଦୀ କିନ୍ତୁ ଜାଣନ୍ତି ସେମାନେ ସେହି ଗୋଟିଏ ଇନ୍ଦ୍ରଙ୍କ ପୁତ୍ର ।

ଇନ୍ଦ୍ର ନିଜର ଆତ୍ମା ଗୁଡ଼ିକୁ ଅନ୍ୟକୁ ଦେଇ ପାପାତ୍ମା ଧରି ବସିଥାନ୍ତି । ଏହି ସମୟରେ ତ୍ୱଷ୍ଟା ତାଙ୍କ ପାଖକୁ ଆସି କ୍ରୋଧରେ ପଚାରିଲେ, ଆରେ ଇନ୍ଦ୍ର ତୁ ମୋର ବାଳ ଶିଷ୍ୟ ଭୂତକୁ ମାରିଲୁ ? ଇନ୍ଦ୍ର ତ ପୁଣ୍ୟାତ୍ମା ଗୁଡ଼ିକୁ ଅନ୍ୟଠାରେ ରଖିଛନ୍ତି, ପାପାତ୍ମା ଧରି ସେ ବସିଛନ୍ତି, ତେଣୁ ବିନୟ ଭାବ ଛାଡ଼ି ସଙ୍ଗେ ସଙ୍ଗେ ଉତ୍ତର ଦେଲେ, ହଁ ମୁଁ ସମ୍ପଦପାଇଁ ତାକୁ ମାରିଲି, ତା ନ ହେଲେ ସେ ଯେଉଁ ତପସ୍ୟା କରୁଥିଲା ତଦ୍ୱାରା ସେ ଇନ୍ଦ୍ରପଦରେ ଅଧିଷ୍ଠିତ ହୋଇଥାନ୍ତା । ଶୁଣୁ ଶୁଣୁ ତ୍ୱଷ୍ଟା ଅଭିଶାପ ଦେଲେ ଏହିକ୍ଷଣି ତୁ ଭସ୍ମ ହୋଇଯା ।

ଇନ୍ଦ୍ର ଭସ୍ମ ହେବା ଦେଖି ବ୍ୟସ୍ତ ହୋଇ ପଡ଼ିଲେ ଶଚୀ । ସେ ଇନ୍ଦ୍ରଙ୍କ ବିଚ୍ଛେଦରେ ଗଙ୍ଗାକୂଳରେ ବସି ଶୋକ କରୁଥାନ୍ତି । ତାଙ୍କ କ୍ରନ୍ଦନ ଶବ୍ଦ ଶୂନ୍ୟରେ ନିଃଶବ୍ଦ ଶୂନ୍ୟ ଭୁବନକୁ ମଧ୍ୟ ଥରାଇ ଦେଉଥାଏ । ନିଃଶବ୍ଦ ରଜନୀ

ଶୂନ୍ୟରେ ବୃଷଭ ଚଢି ଶିବ ପାର୍ବତୀ ଯାଉଥିଲେ ବେଳେ ଏକ ନାରୀର ବିଳାପ ଧ୍ୱନି ଶୁଣି ପାର୍ବତୀ ଶିବଙ୍କୁ ଅନୁନୟ କଲେ ଘଟଣା କଣ ହୋଇଛି ବୁଝିବାକୁ । ଶିବତ ଭୋଳାନାଥ । ସେ ପାର୍ବତୀଙ୍କୁ କହିଲେ ସେ କିଏ ନାହିଁ କିଏ ହୋଇ-ଥିବ, ହୁଏତ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ କନ୍ଦଳ ହୋଇଥିବାରୁ ସ୍ୱାମୀଙ୍କ ଝିଙ୍ଗାସ ସହି ନ ପାରି କେହି ନାରୀ କାନ୍ଦୁଥାଇ ପାରେ । ପାର୍ବତୀ କହିଲେ ଯାହା ହେଉନା କାହିଁକି ତାହା ବୁଝିବାକୁ ହେବ । ସ୍ତ୍ରୀଙ୍କର କାନ୍ଦଶୁଣି ଯଦି କୌଣସି ସ୍ତ୍ରୀ ସେଠାକୁ ଯାଇ ତା କଥା ନ ବୁଝେ ତେବେ ବ୍ରହ୍ମକ୍ଷେତ୍ରରେ ସେ କାଠବେଙ୍ଗ ହୁଏ । ଅଗତ୍ୟା ଶିବ ବୃଷଭକୁ ରହିବାକୁ କହିଲେ । ଶିବ ପାର୍ବତୀ ବୃଷଭ ଉପରୁ ଓହ୍ଲାଇ ଶଚୀଙ୍କ ପାଖକୁ ଗଲେ । କୋମଳ ସ୍ୱରରେ ଶଚୀଙ୍କୁ ପଚାରିଲେ ତୁମେ କାହିଁକି କାନ୍ଦୁଛ । ଶଚୀ ତାଙ୍କୁ ପାଞ୍ଚଥର କରି କହିଲେ ପତିଂ ଦେହି ପତିଂ ଦେହି ଆନନ୍ଦରେ ଶିବ କହିଲେ ତୁମର ପଞ୍ଚ ପତି ହୁଅନ୍ତୁ ।

ଶଚୀ ବିସ୍ମିତ ହୋଇ କହିଲେ, ମୁଁ ହେଉଛି ସତୀ ନାରୀ । ଆପଣ ଯେଉଁ ବର ଦେଲେ ମୋର ପଞ୍ଚ ପତି ହୁଅନ୍ତୁ ବୋଲି, ତାହା ମୋ ପକ୍ଷରେ ଅଭିଶାପ ହୋଇଗଲା ।

ଶିବ କହିଲେ ତୁମେ କଣ ଜାଣିନାହିଁ ଇନ୍ଦ୍ର ତାଙ୍କର ପଞ୍ଚ ଆତ୍ମାକୁ କଦଳ ଗଛଠାରେ ରଖିଛନ୍ତି ? ସେହି ଆତ୍ମାଗୁଡ଼ିକ ଦୁଇଜଣ ସ୍ତ୍ରୀଙ୍କଠାରୁ ପଞ୍ଚ ରୂପରେ ଜନ୍ମଗ୍ରହଣ କରିବେ । ସେମାନେ ତୁମର ପତି ହେଲେ ତୁମ ସତୀତ୍ୱର ଅମର୍ଯ୍ୟାଦା ହେବ ନାହିଁ ।

ଶଚୀ ଯେଉଁ ଅଗ୍ନିରେ ବାସବ ଜଳୁଥିଲେ ସେହି ଅଗ୍ନିରେ ଝାସଦେଇ ଦେହ ତ୍ୟାଗ କଲେ । ଅନାଦିଶକ୍ତି କେତୁକା ସେହି ଅନଳ ମଧ୍ୟରେ ନିଜକୁ ରଖିଥିଲେ

ଗୁପ୍ତ ଭାବେ । ସେହି ଅନଳ ନେଇ ବ୍ୟାସ ଯଜ୍ଞ କଲେ ଦ୍ରୋପଦଙ୍କ ଘରେ । ତାହାର ମଧ୍ୟରୁ ଜନ୍ମ ହୋଇଛନ୍ତି ସେ ଦ୍ରୋପଦୀ ନାମ ଧରି ।

ଦ୍ରୋପଦୀଙ୍କ ଇଙ୍ଗିତ ପାଇ ସହଦେବ ରଥ ବାହିନେଲେ ଯୁଦ୍ଧ କ୍ଷେତ୍ରରୁ ଏଥର ତୃପ୍ତ ତାଙ୍କ ମନର ବାସନା । ଏତେଦିନ ପରେ ତାଙ୍କର ଅଭିଳାଷ ପୂର୍ଣ୍ଣ ହୋଇଛି । ଯେଉଁ ହାତ ତାଙ୍କ କେଶ ସ୍ପର୍ଶ କରିଥିଲା ସେ ହାତର ରକ୍ତରେ ସେହି କେଶ ଶୁଦ୍ଧ ସ୍ନାନ କରିଛି । ଏଣିକ ସାଧାରଣ ସ୍ତରକୁ ଫେରି-ଯିବାକୁ ପଡ଼ିବ । ଯମୁନା ର ଶୁଭ୍ର ଜଳରେ ଧୌତ କରିବାକୁ ହେବ ନିଜର ସମଗ୍ର ଦେହକୁ ।

ରଥ ଧାଇଁ ଚାଲିଛି ଇନ୍ଦ୍ରପ୍ରସ୍ଥ । ଦ୍ରୋପଦୀ ଡାକଲେ ସହଦେବ ରଥ ଯମୁନାକୂଳକୁ ବାହିନିଅ ।

+ + +

ହସ୍ତିନାରେ ନିରାନନ୍ଦ ବେଳ । ଏକମାତ୍ର ଦୁର୍ଯ୍ୟୋଧନ ବ୍ୟତୀତ ଅନ୍ୟଭାଇ ମାନେ ହତ । ସେମାନଙ୍କ ବିଧବା ପତ୍ନୀଙ୍କ ଶୋକ ହସ୍ତିନାକୁ ଏକ ଶୋକର ନଗର ରୂପେ ଜଣାଇ ଦେଉଥାଏ । ଏକମାତ୍ର ଦୁର୍ଯ୍ୟୋଧନ ବଞ୍ଚିଥିଲେ ମଧ୍ୟ ମୃତ ଭାଇମାନଙ୍କ ପାଇଁ ସେ ମଧ୍ୟ ଶୋକାତୁର । ମାତ୍ର ଇନ୍ଦ୍ରପ୍ରସ୍ଥରେ ଆନନ୍ଦର ଢେଉ ଖେଳି ଯାଇଛି । ପାଣ୍ଡବ ପକ୍ଷର ଯେ କେହି ମରି ନାହାନ୍ତି ଏହା ନୁହେଁ । ତଥାପି ଗତ ଦୁଇଦିନ ଯୁଦ୍ଧ ପାଣ୍ଡବମାନଙ୍କ ଦୁଃଖକୁ ଲାଘବ କରି ଟିକିଏ ଆନନ୍ଦର ଜୁଆର ଖେଳାଇ ଦେଇଥାଏ । ଦୁଇଦିନ ଧରି କିଭଳି କଣ ହୋଇଛି ତାହା ଆଲୋଚନା କରି ଆସନ୍ତା କାଲିକୁ କଣ କରାଯିବ ସେ ବିଷୟରେ କଳ୍ପନା ଜଳ୍ପନା ଚାଲିଥାଏ । ଏଣେ ରାତି ଧୀରେ ଧୀରେ ବଢ଼ି ଚାଲିଛି । ହୁଏତ ବହୁତବେଳୁ ସେମାନେ ବିଶ୍ରାମ ପାଇଁ ଯାଇ ପାରନ୍ତେଣି ।

ଯାନ୍ତ ବନ୍ଧୁ ଶ୍ରୀକୃଷ୍ଣ ନ ଉଠିବା ପର୍ଯ୍ୟନ୍ତ କିଏ କପରି ବିଶ୍ରାମ ପାଇଁ ଯା ମିବ । ତତ୍ପରେ ଅନ୍ତଃପୁରରୁ ମୃଦୁସ୍ୱର ଆସି ଭୀମସେନଙ୍କ କାନରେ କହିଲା ମିଷ୍ଟାନ୍ନସମାଙ୍କର ଆଜ୍ଞା ହେଲା ଆପଣ ଅନ୍ତେଶ୍ୱରକୁ ବିଜେ କରନ୍ତୁ ।

ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣ କହି ଉଠିଲେ, ରାତି ବହୁତ ହେଲାଣି, ବର୍ତ୍ତମାନ ଯଦି ଟିକିଏ ବିଶ୍ରାମ ନ ନେବ ତେବେ ପ୍ରଭାତରୁ ଉଠି ଯୁଦ୍ଧପାଇଁ ପ୍ରସ୍ତୁତ ହୋଇ ପାରିବା ନାହିଁ ।

ଶ୍ରୀକୃଷ୍ଣଙ୍କ ମୁହଁରୁ ଏତିକି ଶୁଣିବାକୁ ସମସ୍ତେ ଯେପରି ଅପେକ୍ଷା କରି-ଥିଲେ—ମୁଖରୁ ବିଶ୍ରାମ ପାଇଁ ଟିକିଏ କହୁ କହୁ ସମସ୍ତେ ବୁଲିଲେ ରାତିଟି ସୁଖରେ କଟାଇବାକୁ ।

ଦ୍ରୌପଦୀ ଡାକୁଛନ୍ତି ଶୁଣି ଶୁଣି ଭୀମସେନଙ୍କର ବଡ ଆନନ୍ଦ । ଭୀମସେନ ଉଠିପଡ଼ିଲେ ଅନ୍ତଃପୁରକୁ ଯିବାପାଇଁ । ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣ ଉଠିପଡ଼ିଲେ ଦୁଇ ପାହୁଣ୍ଡ ଯାଇ ଭୀମସେନଙ୍କୁ ଟିକିଏ ଏକୁଟିଆ ସ୍ଥାନକୁ ଡାକି ନେଲେ । ଶ୍ରୀକୃଷ୍ଣ ଟିକିଏ ଏଣେ ତେଣେ ଚାହିଁ ଭୀମଙ୍କୁ କହିଲେ ଦେଖ ଭୀମ ଦ୍ରୌପଦୀ ଆଜି ତୁମ ଉପରେ ବଡ଼ ପ୍ରସନ୍ନ । କେଳି ମନ୍ଦିରରେ ତୁମେ ତାକୁ ରତି-କ୍ରୀଡ଼ାରେ ସନ୍ତୁଷ୍ଟ କଲାପରେ ସେ ଯେତେବେଳେ ତୁମକୁ ବର ଦେବାପାଇଁ ଚାହିଁବ, ସେତେବେଳେ ତୁମେ କହିବ ଆମେ ପଞ୍ଚ ପାଣ୍ଡବ ଏବଂ ବନ୍ଧୁ କୃଷ୍ଣ ଯେପରି ତୋ ଦାନ୍ତରେ ନ ପଡ଼ିବୁ ।

ସ୍ତବ୍ଧ ହୋଇ ଛିଡ଼ା ହୋଇଗଲା ଭୀମ କହୁ ସମସ୍ତ ଶ୍ରୀକୃଷ୍ଣଙ୍କ କଥା ଶୁଣି । ଏ କି କଥା ? ଦ୍ରୌପଦୀ କଣ କି ତାକୁ ମୁଁ କହିବି ଆମେ ତୋ ଦାନ୍ତରେ ପଡ଼ିବୁ ନାହିଁ ?

ଭୀମଙ୍କର ଥତ ମତ ଅବସ୍ଥା ଦେଖି ଶ୍ରୀକୃଷ୍ଣ ମୁହଁରେ ହସ ଖେଳାଇ କହିଲେ, ଚିନ୍ତା କରିବାକୁ ଆଉ ରାତି ଆସୁନାହିଁ । ପରେ ମୁଁ ସବୁ କହିବି । ଯା ଯା ଦେଖ ମୋ କଥା ଯେପରି ଭୁଲି ନ ଯାଅ ।

ଭୀମ ମୁଣ୍ଡ ଟେକି ଚାଲିଗଲେ ଅନ୍ତଃପୁର ମଧ୍ୟକୁ ।

ଦ୍ରୋପଦୀ ତାଙ୍କୁ ଦେଖି ଦେଖି ଆନନ୍ଦରେ କୁଣ୍ଢାଇ ପକାଇଲେ । ଭୀମ ମଧ୍ୟ ଭୁଲିଗଲେ ସବୁ । ଶୃଙ୍ଗାରେ ସଦା ଯେ ଅତୃପ୍ତି, ତା ପାଖରେ ନାରୀର ଶଙ୍ଗାର ପ୍ରାର୍ଥନା ସ୍ୱର୍ଗ ସମ୍ପଦ । କିଛି ସମୟ ସବୁ କିଛିକୁ ଭୁଲି ସେ ଦ୍ରୋପଦୀଙ୍କ ସହିତ ମାତିଗଲେ ଶୃଙ୍ଗାର ରସରେ । ତାପରେ ଦ୍ରୋପଦୀ ସନ୍ତୁଷ୍ଟ ହୋଇ ଯେତେବେଳେ କହିଲେ ଭୀମସେନ ମୁଁ ତୁମ ଉପରେ ସନ୍ତୁଷ୍ଟ, ତୁମେ ଏଥର ବର ମାଗି ନିଅ । ସେତେବେଳେ ଭୀମଙ୍କର ଶ୍ରୀକୃଷ୍ଣଙ୍କ କଥା ମନେ ପଡ଼ିଗଲା ।

ଭୀମ କରପତ୍ର ଯୋଡ଼ି କହିଲେ, ଆଗୋ ଗୋସାମଣୀ ! ତୁମେ ଯଦି ମୋ ଉପରେ ସନ୍ତୁଷ୍ଟ ତେବେ ତୁମ ଦାଢ଼ରୁ ବନ୍ଧୁ ଶ୍ରୀକୃଷ୍ଣଙ୍କ ସହ ପଞ୍ଚ ପାଣ୍ଡବ ତୋ ଦାଢ଼ରେ ନ ପଡନ୍ତୁ ।

ଟହ ଟହ ହୋଇ ହସି ଉଠିଲେ ଦ୍ରୋପଦୀ । ତାଙ୍କ ସେ ହସ ଶୁଣି ଏଡ଼େ ବଳବନ୍ତ ପୁରୁଷ ଭୀମ ଭୟରେ ଜୁଆଁ ହୋଇଗଲେ । ଟିକକ ପରେ ହସ ବନ୍ଦ କରି ସେ କହିଲେ, ଏ ବୁଦ୍ଧି ବୋଧେ ତୁମକୁ ସେହି ବଳିଆ କପଟି ଶ୍ରୀକୃଷ୍ଣ ଦେଇଛନ୍ତି । କିନ୍ତୁ ମୋ କବଳରୁ ତୁମେ କେହି ନିସ୍ତାର ପାଇବ ନାହିଁ । ପ୍ରଥମେ ତ ଶ୍ରୀକୃଷ୍ଣ ପଡ଼ିବେ । କେବଳ ଜଣେ ମୋ କବଳରୁ ବର୍ତ୍ତିଯିବେ, ସେ ହେଉଛନ୍ତି ଧର୍ମ ଯୁଧିଷ୍ଠିର । ତୁମର ବଚନରେ ମୁଁ ସନ୍ତୁଷ୍ଟ । କିନ୍ତୁ ଏତେ ସହଜରେ ମୋ ଦାଢ଼ରୁ ତୁମେ ମୁକ୍ତ ପାଇ ପାରିବ ନାହିଁ । ମହା-ମାୟାଙ୍କର ଗୋଟାଏ ବିରାଟ ଅଞ୍ଚଳ ଅଛି । ସେ ଅଞ୍ଚଳ ବାହାରେ ଶୂନ୍ୟପୁରୁଷ

ପରମଶିବଙ୍କ ସ୍ଥିତି । ମହାମାୟାଙ୍କ ପରିସରକୁ ଅତିକ୍ରମ ନ କଲେ କୌଣସି ଜୀବ ସେହି ଶୂନ୍ୟ ପୁରୁଷଙ୍କୁ ଦର୍ଶନ କରି ପାରେ ନାହିଁ । ସେଥିପାଇଁ ଯୁଦ୍ଧେଷ୍ଟି ହେଉଛନ୍ତି ଏକମାତ୍ର ବ୍ୟକ୍ତି ଯେକି ମହାମାୟାଙ୍କ ବିରାଟ ଅଞ୍ଚଳକୁ ଅତିକ୍ରମ କରି ପରମ ଶିବଙ୍କୁ ସ୍ପର୍ଶ କରି ପାରିବେ ।

ଦ୍ରୋପଦୀ ତାଙ୍କର ପତ୍ନୀ । ପରି ମୂହୂର୍ତ୍ତରେ ସେ ତାଙ୍କ ସହିତ ଏକତ୍ର ସହବାସ କରିଥିଲେ । କିନ୍ତୁ ତାଙ୍କ ଠାରୁ ବିଦାୟ ନେଇ ଅନ୍ତପୁରରୁ ଫେରିଲା ବେଳେ ତାଙ୍କୁ ବାରଂବାର ପ୍ରଣାମ କରିବାକୁ ଲାଗିଲେ । ଯଜ୍ଞସେନୀ ସ୍ମିତ ହାସ୍ୟରେ ତାଙ୍କର ସେ ପ୍ରଣାମକୁ ଗ୍ରହଣ କରୁଥିଲେ ।

ରାତି ପାହୁ ନ ପାହୁଣୁ ଶ୍ରୀକୃଷ୍ଣ ଶଯ୍ୟାତ୍ୟାଗ କରି ସାରିଥାନ୍ତି । ସେ ତାଙ୍କର ନିତ୍ୟକର୍ମ ସାରି ବାହାରେ ଅପେକ୍ଷା କରିଥାନ୍ତି ଭୀମସେନଙ୍କୁ । ତାଙ୍କର ଧାରଣା ଗତକାଲି ଦ୍ରୋପଦୀ ଯେଉଁ ଭଳି ସନ୍ତୁଷ୍ଟ ହୋଇଛନ୍ତି ଭୀମଙ୍କ ଉପରେ, ଭୀମ ଯଦି ତାଙ୍କ କହିଥିବା କଥା ଦ୍ରୋପଦୀଙ୍କୁ କହିଥାଏ ତେବେ ଦ୍ରୋପଦୀ କେବେ ବାସ୍ତି କରିବେ ନାହିଁ ।

ଭୀମଙ୍କର ଆସିବା ଯେତିକ ଡେରି ହେଉଥାଏ ସେତିକ ବ୍ୟସ୍ତ ହୋଇ ପଡୁଥାନ୍ତି ଭଗବାନ ଶ୍ରୀକୃଷ୍ଣ । ଏତେ ବେଳ ଗଡ଼ିଯାଉଛି ଆଜି ଦିନର ଯୁଦ୍ଧ ପାଇଁ ପ୍ରସ୍ତୁତ ହେବା ନିମିତ୍ତ ।

ଟିକଏ ବିଳମ୍ବରେ ଭୀମ ଆସିଲେ । ତାଙ୍କ ମୁହଁଟିରେ ସେଭଳି କିଛି ପ୍ରଫୁଲ୍ଲତା ଶ୍ରୀକୃଷ୍ଣ ଦେଖି ପାରିଲେ ନାହିଁ । ମନ ତାଙ୍କର ଉଦ୍‌ବିଗ୍ନ ହୋଇ ପଡ଼ିଲା ଘଟଣାଟି ଜାଣିବା ପାଇଁ । କିଣ ଭୀମଙ୍କର ମନେ ନାହିଁ କହିବାକୁ ବା ଆଉ ସେହିଭଳି କିଛି—

ମହାବୀର ଭୀମସେନ ଶାନ୍ତ କ୍ଳାନ୍ତ ହୋଇ ଆସିଲା ଭଳି ଧୀରେ ଧୀରେ ବିଷର୍ଣ୍ଣ ବଦନରେ ଆସି ଶ୍ରୀକୃଷ୍ଣଙ୍କ ସମ୍ମୁଖରେ ଠିଆ ହେଲେ । ଶ୍ରୀକୃଷ୍ଣ କିଛି

କରିବା ପୂର୍ବରୁ ଧ୍ୱଂସପାନ କରିବେ; ବୃଦ୍ଧ ପାଣ୍ଡବଙ୍କ ସହିତ ଶ୍ରୀକୃଷ୍ଣଙ୍କୁ ମୁଁ ଭକ୍ଷଣ କରିବ । ଏକମାତ୍ର ଧର୍ମ ଯୁଦ୍ଧରେ ମୋ ହାତରୁ ଖସିପିବେ ।

ଶୁଣୁ ଶୁଣୁ ଶ୍ରୀକୃଷ୍ଣଙ୍କର ମୁହଁ ମଧ୍ୟ ଶୁଖିଗଲା । ତାଂକ ପାଟି ଶୁଖିଅଠା ଅଠା ହୋଇଗଲା । ତାଂକର ମନେ ହେଲା ଏ ସମଗ୍ର ବିଶ୍ୱ ଯେପରି ଘୂର୍ଣ୍ଣି-ଘୂର୍ଣ୍ଣିମାନ ବିଶ୍ୱରେ ନିଜେ ସ୍ଥିର ହେବାକୁ ଚେଷ୍ଟା କରି ଯେପରି ଅସ୍ଥିର ହୋଇ ସେ ପଡ଼ୁଛନ୍ତି ।

ଏତିକ ବେଳେ ଯୁଦ୍ଧକୁ ଯିବାପାଇଁ ଶଙ୍ଖ, ଢୋଲ, କାହାଳ, ମର୍ଦ୍ଦଳ, ଭେରି ପ୍ରଭୃତି ଯୁଦ୍ଧବାଦ୍ୟ ସମସ୍ତ ଇନ୍ଦ୍ର ପ୍ରସ୍ଥକୁ ଥରାଇ ବାଜି ଉଠିଲା । ବୀରମାନେ ସଜ ହୋଇ ଧାଡ଼ ଧାଡ଼ ହୋଇ ଛିଡ଼ା ହୋଇଗଲେ ।

ଅନ୍ୟ କୌଣସି କଥା ଭାବିବାକୁ ଆଉ ଅବସର ନାହିଁ । ଶ୍ରୀକୃଷ୍ଣ ତର ତର ହୋଇ ବାହାରି ପଡ଼ିଲେ ଯୁଦ୍ଧ କ୍ଷେତ୍ରକୁ ।



## ଧ[illegible]ର

ରାତି ର ଦୁଇ ପ୍ରହର ଗତପ୍ରାୟ । ହସ୍ତରେ ଖଡ୍ଗଟିଏ ଧରି ବୁଲୁଛନ୍ତି ବିଦୁର । ହସ୍ତିନାର ପୁରେ ପୁରେ ସେ ବୁଲିଯାଉଛନ୍ତି । ମନ ତାଙ୍କର ବିଷାଦଗ୍ରସ୍ତ । ତେଣୁ କିଛି ଭଲ ଲାଗୁ ନାହିଁ ତାଙ୍କୁ । ବହୁଲୋକ ତାଙ୍କୁ ବାଟରେ ସମ୍ମାନ ଦେଖାଇ ନମସ୍କାର କରନ୍ତି । କିନ୍ତୁ କାହାକୁ ସେ ପ୍ରତିନମସ୍କାର କରନ୍ତି ବା କାହାକୁ ନାହିଁ । ଜାଣି ଶୁଣି ଯେ ସେ ପ୍ରତିନମସ୍କାର କରୁନାହାନ୍ତି ଏହା ନୁହେଁ । ଅନ୍ୟମନସ୍କତା ଯୋଗୁ କାହାର ନମସ୍କାର ଦେଖି ନ ଦେଖିଲା ଭଳି ସେ ରହନ୍ତି ।

ଧର୍ମ ଓ ନ୍ୟାୟରୁ ଟିକିଏ ହେଲେ ସେ ବିଚଳିତ ହେବାକୁ ଚାହାନ୍ତି ନାହିଁ । ତଥାପି କର୍ତ୍ତବ୍ୟ ଦୃଷ୍ଟିରୁ ଖଡ୍ଗଟିଏ ଧରି ଘୂରି ବୁଲୁଛନ୍ତି ସେ । ଭୟ ନ ଥିଲେ କଣ ମନ୍ତ୍ରୀ ମଣିଷ ହୋଇପାରିବ ? କର୍ତ୍ତବ୍ୟ ନିମିତ୍ତ ସେ ଯଦି କାହାକୁ ହତ୍ୟାକରେ ତେବେ ତାହା ଦୋଷ ନୁହେଁ । ବରଂ ନ କଲେ କର୍ତ୍ତବ୍ୟରେ ଅବହେଳା ହେତୁ ଦୋଷାବହ ।

ମନ ତାଙ୍କର ବିଷାଦଗ୍ରସ୍ତ ହେଲେ ମଧ୍ୟ ତାଙ୍କର ଆଖି ସଜାଗ । ବିଲେଇ ଛୁଆଟିଏ ରାସ୍ତା କଡ଼ଦେଇ ଚାଲିଗଲେ ମଧ୍ୟ ତାଙ୍କ ଦୃଷ୍ଟି ତା ଉପରେ ପଡ଼ିଥାଏ । ପିଲାଦିନରୁ ସେ କର୍ତ୍ତବ୍ୟପରାୟଣ । କର୍ତ୍ତବ୍ୟରେ ଅବହେଳା କରିବା ତାଙ୍କ ପକ୍ଷରେ ଚରମ ଅପରାଧ । ସେଥିପାଇଁ ସତ୍ୟନିଷ୍ଠ ଯୁଧିଷ୍ଠିରଙ୍କୁ ଡାକି ଝିମାଣିଶାଳ ନିର୍ମାଣର ଭିତରି କଥା କହି ଦେଇଛନ୍ତି । ଯେତେ ବଡ଼ ହୁଅନ୍ତୁ ନା କାହିଁକି ତାଙ୍କ ଆଗରେ ସେମାନେ ପିଲା । ଧୃତରାଷ୍ଟ୍ର ଓ ପାଣ୍ଡୁ ଯେଉଁଭଳି ଦୁଇ ଭାଇ ସେହିଭଳି ମଧ୍ୟ ଧୃତରାଷ୍ଟ୍ର ପାଣ୍ଡୁଙ୍କର ସେ ବି ଗୋଟିଏ ଭାଇ । ଆଜି ଭାଇ ପାଣ୍ଡୁ ସ୍ୱର୍ଗରେ । ତାଙ୍କ ପିଲାମାନଙ୍କର ଭଲ ମନ୍ଦ ଦେଖିବା ତାଙ୍କର କର୍ତ୍ତବ୍ୟ । ବଡ଼ ଭାଇ ଧୃତରାଷ୍ଟ୍ରଙ୍କ ପିଲାମାନେ ପାଣ୍ଡବମାନଙ୍କୁ କେବେ ସହି ପାରିଲେ ନାହିଁ ! ତେଣୁ ପାଣ୍ଡବମାନେ ତାଙ୍କଠାରୁ ଦୂରରେ ରହିଲେ ମଧ୍ୟ କୌରବମାନେ ତାହା ବି ଚାହାନ୍ତି ନାହିଁ । ତାଙ୍କୁ କିପରି ଜୀବନରେ ମାରି ଦିଆଯିବ ସେଥିପାଇଁ ସେମାନେ ସର୍ବଦା ବ୍ୟସ୍ତ ।

ଗଙ୍ଗାକୂଳିଆ ସେହି ଗୋଷ୍ଠ [illegible] ଳ ପୁରୋଚନ ପଣ୍ଡା ସହିତ କ
ୁଯୋଗରେ ଦୁର୍ଯୋଧନର ଦେଖାଦେଖି କେଜାଣି ଆନ୍ଦାଦ୍ୱାରା ପାଣ୍ଡବଙ୍କୁ ଉଚ୍ଛନ୍ନ
ହେବାକୁ ବସିଛି । ଜଉ, ସଜଳସ, ଘିଅଢିଅ, ଛଣପଟରେ ସେ ଗୋଟାଏ ଘର
ନିର୍ମାଣ କରାଇ ଦେଇଛି ଯେଉଁ ଘରେ ପାଣ୍ଡବମାନେ ରାତରେ ଶୋଇଥିଲା ବେଳେ
ନିଆଁ ଲଗାଇ ପୋଡ଼ଦେବ । ଆହା ନିରୀହ ବାପ ଛେଉଣ୍ଡ ପାଞ୍ଚଟି ଭାଇ ତା ମଧ୍ୟରେ
ପୋଡ଼ି ପାଉଁଶ ହୋଇଯିବେ ।

ମନେପଡ଼ିଲା ତାଙ୍କର ସେଦିନ କଥା । ବଡ଼ଭାଇ ଧୃତରାଷ୍ଟ୍ର ଜନ୍ମରୁ ଅନ୍ଧ ।
ରାଜ୍ୟ ଭୁଲଉଥିଲେ ଭାଇ ପଣ୍ଡୁ । ଅଗ୍ନିକାର ମହର୍ଷିଙ୍କ ଅଭିଶାପରେ ମାଦ୍ରିଙ୍କ
ସହିତ ଶୃଙ୍ଗାର କରୁଥିଲାବେଳେ ଅକାଳ କାଣ୍ଡଦ୍ୱାରା ପଣ୍ଡୁ ନାଶଗଲେ । ଏହାପରେ
କିଏ ରାଜ୍ୟ ଭୁଲାଇ ପାରିବ ସେ ବିଷୟ ଜ୍ୟେଷ୍ଠ ଧୃତରାଷ୍ଟ୍ର ତାଙ୍କୁ ଏବଂ ସଞ୍ଜୟ,
ଭୂରିସବା, ଭୀଷ୍ମ, କର୍ଣ୍ଣ, ଅଶ୍ୱତ୍ଥମା, ଶଲ୍ୟ, ଶଂକୁନି, କୃପଆଦିଙ୍କୁ ବସାଇ
ପଚାରୁଥିଲେ । ଭୂରିସବା ପ୍ରଥମେ କହିଲେ, ଯଦି ଆମ୍ଭମାନଙ୍କ ମତ ତୁମେ ଚାହୁଁଛ
ତେବେ ଯୁଧିଷ୍ଠିରଙ୍କୁ ରାଜ୍ୟ ଶାସନଭାର ଦେବା ଉଚିତ୍ । ରାଜ୍ୟର ସମସ୍ତ ପ୍ରଜା
ତାଙ୍କ ଉପରେ ସନ୍ତୁଷ୍ଟ । ସେ ପୁଣି ବୟସରେ ସବୁ ଭାଇମାନଙ୍କଠାରୁ ବଡ଼ ।
ଅବଶ୍ୟ ତୁମ ଦୁଇଭାଇଙ୍କ ମଧ୍ୟରେ ତୁମେ ବଡ଼ । ମାତ୍ର ରାଜ୍ୟଶାସନରେ ଅକ୍ଷମ
ଥିବାହେତୁ ପଣ୍ଡୁ ତ ରାଜ୍ୟଶାସନ କରୁଥିଲେ । ତୁମ ବଡ଼ପୁଅ ଦୁର୍ଯୋଧନ ଯଦି
ରାଜା ହୁଅନ୍ତି ତେବେ ସେ ପ୍ରଜାମାନଙ୍କୁ ଏଭଳି କରିବ ଯଦ୍ୱାରା ପ୍ରଜାମାନେ ଅସନ୍ତୁଷ୍ଟ
ହୋଇ ରାଜ୍ୟଛାଡ଼ି ଚାଲିଯିବେ । ଦେଖିବାକୁ ଗଲେ ଏ ରାଜ୍ୟ ପଣ୍ଡୁର । ଯେତେ-
ବେଳେ ପଣ୍ଡୁ ପନ୍ଦର ବର୍ଷ ତପ କରୁଥିଲେ, ସେତେବେଳେ କାଳଦମନ ଆସି
ରାଜ୍ୟ ମାଡ଼ିବସିଲା । ତୁମେ ସମସ୍ତେ ଯାଇ ଶତଶିଂଗ ଉପରେ ରହିଥିଲ । ସେହି
ପଣ୍ଡୁ ତପସ୍ୟାରେ ଭାଗ୍ୟବରଙ୍କୁ ସନ୍ତୁଷ୍ଟକରି ବହୁ ବିଦ୍ୟା ସାଧିକରିବା ପରେ
ହସ୍ତିନାରେ ପହଞ୍ଚି କାଳଦମନକୁ ବଧକଲେ । ତାପରେ ତୁମକୁ ପୁଣି ହସ୍ତିନା
କଟକରେ ଆଣି ରଖାଇଥିଲେ । ତୁମ ସମସ୍ତଙ୍କୁ ହସ୍ତିନାପୁର ଦେଇ ଆପେ ସେ
ରହିଲେ ବଣଜଙ୍ଗଲ ପୂର୍ଣ୍ଣ ସେହି ଶତଶିଂଗରେ । ପ୍ରକୃତରେ ପଣ୍ଡୁଙ୍କର ଅର୍ଜିତ

ଏ ରାଜ୍ୟ । ଏକଥା ପାଣ୍ଡବମାନେ ମଧ୍ୟ ଜାଣନ୍ତି । ଯଦି ଯୁଧିଷ୍ଠିରଙ୍କ ଧର୍ମକଥା କହି ସମଜ ପାରି ତେବେ ଭଲ ।

ମନେ ମନେ ସେ ଭୂରିସବାଙ୍କ କଥାଶୁଣି କହୁଥିଲେ, ଧର୍ମକଥା କହି ଯୁଧିଷ୍ଠିରଙ୍କୁ ଶାନ୍ତକରି ଦିଆଯାଇପାରେ । ମାତ୍ର ଭୀମ ଅର୍ଜୁନ ଆଦିଙ୍କୁ ତ ଶାନ୍ତ କରାଯାଇପାରିବ ନାହିଁ ।

ଶକୁନି ଟିକିଏ ହସି ଏଣିକି ତେଣିକି ଚାହିଁ କହି ଉଠିଲେ ମୋର କିନ୍ତୁ ଏ ବିଷୟରେ ଗୋଟିଏ କଥା କହିବାର ଅଛି । ଆମ୍ଭ ବହୁଲୋକଙ୍କର ଇଚ୍ଛା ଦୁର୍ଯ୍ୟୋଧନ ହେଲେ ଭଲ ହୁଅନ୍ତା । ଏହି କଥାରେ କେବଳ ପାଣ୍ଡବ ପାଞ୍ଚଭାଇ ଯାହା ବିବାଦୀ ହେବେ । ତେଣୁ ସେହି ପାଞ୍ଚଜଣଙ୍କୁ ଯଦି ମୁଁ ଜୀବନରେ ମାରିଦେଇ ପାରିବି ତେବେ ଆଉତ କିଛି ଅସୁବିଧା ହୁଅନ୍ତା ନାହିଁ ?

ଧର୍ମ ଧର୍ମ କହି ଉଠିପଡ଼ିଲେ ଭୂରିସବା, ଭୀଷ୍ମ, ସଞ୍ଜୟ ପ୍ରଭୃତିଙ୍କ ସହିତ ନିଜେ ସେ କହିଲେ ଏଗୁଡ଼ାକ କି କଥା । ରାଜ୍ୟ ଶାସନପାଇଁ ନିର୍ଦ୍ଦୋଷ ଧାର୍ମିକ ଲୋକଗୁଡ଼ାଙ୍କୁ ମାରି ଦିଆଯିବ ? ଯେ ଏହିକଥା କହିଲା ତାର ଯେତିକି ଅପରାଧ, ତା'ଠାରୁ ବେଶୀ ଶୁଣିବା ଲୋକର ବହୁ ହୀନକଥା ମଣିଷ କହିପାରେ । ମାତ୍ର ଭଲ ଲୋକର ଉଚିତ୍ ତାର ନିନ୍ଦାକରିବା । ତା ନହେଲେ ଧ୍ୱଂସାବକ ଗୋଟାଏ ମଣିଷ ହୋଇ ପାରିବ ନାହିଁ ଓ ଏହିଭଳି କଥାକହି ବହୁ ସାଧାରଣ ଲୋକଙ୍କୁ ବିପଥଗାମି କରାଇବ ।

ଏହି ଘଟଣାର ମାତ୍ର କେତେଦିନ ପରେ ପାଣ୍ଡବେ ଶୀକାରକୁ ଯାଇ ଗୋଟିଏ ଗଣ୍ଡା ବଧ କଲେ । ଗଣ୍ଡାଟି ଦେଖି ସଙ୍ଗେ ସଙ୍ଗେ ଯୁଧିଷ୍ଠିର କହିଲେ ଏଭଳି ଅପୂର୍ବ ପଦାର୍ଥ ଆମେ କେଇଜଣ କଣ କରିବା, ଏହାକୁ ହସ୍ତିନାକୁ ନେଇଯାଉ ଭୀମ । ବଡ଼ବାପା, ବଡ଼ ମା' ଅଛନ୍ତି । ପୁଣି ଦୁର୍ଯ୍ୟୋଧନ ଆଜ ପିଲମାନେ ଏହାକୁ ଦେଖି କେତେ ଆନନ୍ଦ ନ ହେବେ । ବଡ଼ଭାଇଙ୍କ କଥା ଅନ୍ୟ ଗୁରୁଜଣଙ୍କର ଶିରୋଧାର୍ଯ୍ୟ । ଭୀମ ଗଣ୍ଡାଟି ଧରି ଗଲେ ହସ୍ତିନା । ଠିକ୍ ତା ପୂର୍ବରୁ ଧୃତରାଷ୍ଟ୍ର ସେମାନଙ୍କୁ ବସାଇ କହୁଥିଲେ, ତୁମ୍ଭେମାନେ ମୋତେ ବାରଣ

କରନାହିଁ, ଦ୍ରୁଯୋଧନଙ୍କୁ ମୁଁ ରାଜ୍ୟଭାର ଦେଇ ଦେଉଛି । ଦଶରଥ ତ ପୁଣି ରାମଙ୍କ ଭଳି ବଡ଼ପୁଅ ଥାଉଁ ଥାଉଁ ଭରତଙ୍କୁ ରାଜା କରାଇଥିଲେ ।

ଏହି କଥାଟି ଅନ୍ୟଙ୍କୁ ଯାହା ଲାଗୁନା କାହିଁକି, ତାଙ୍କୁ ମୋଟେ ଭଲ ଲାଗିଲା ନାହିଁ । ସେ ପ୍ରତିବାଦ କରି କହିଥିଲେ, ଫଳରେ ହେଲା କଣ ? ଭରଥ ରାଜା ତ ହେଲେ ନାହିଁ, ନିଜେ ସେହି ଚିନ୍ତାରେ ମଲେ । ଏ ଭଳି ମନଚିନ୍ତା କରିବା ଉଚିତ୍ ନୁହେଁ । ଏହା ଯଦି କାର୍ଯ୍ୟରେ ପରିଣତ କରନ୍ତି ତେବେ ନିଜେ କଷ୍ଟ ପାଇବ ଏବଂ ବଂଶ ନାଶ ଯିବ ।

ଠିକ୍ ଏତିକିବେଳେ ଗଣ୍ଡାଟି ଧରି ଭୀମ ପହଞ୍ଚିଲା । ତାକୁ ଦେଖି ସେ କହିଥିଲେ, ଭାଇ ! ଏହିଭଳି ଭାବେ ପିଲାଗୁଡ଼ାକ ଆପଣଙ୍କୁ ଭକ୍ତି ହେଉଥିଲା-ବେଳେ, ଅନ୍ୟାୟ କରିବାଟା କେବେ ଉଚିତ ହେବନାହିଁ । ଏହା କଲେ ପାପରେ ନିଜେ ମରି ବଂଶକୁ ବୁଡ଼ାଇବା ସାର ହେବ । ପୂର୍ବର ପାପକର୍ମ ଯୋଗୁ ଏ ଜନ୍ମରେ ତୁମେ ଅନ୍ଧହୋଇ ବସିଛ । ଯଦି ଏ ଜନ୍ମରେ ପୁଣି ସେହିଭଳି ପାପକର ତେବେ ପରଜନ୍ମରେ ତୁମର ଅବସ୍ଥା କଣ ହେବ ? ପାପ ଦୋଷରୁ କେବଳ ତୁମର ନର୍କଗତି ଛଡ଼ା ଆଉକିଛି ନାହିଁ ।

କ୍ରୋଧରେ ପ୍ରଚଣ୍ଡ ହୋଇଗଲେ ବଡ଼ଭାଇ ଧୃତରାଷ୍ଟ୍ର ତାଙ୍କ କଥାଶୁଣି । ସଙ୍ଗେ ସଙ୍ଗେ ଖଣ୍ଡାଧରି ତାଙ୍କୁ ହାଣିଦେବାକୁ ଉଠି ପଡ଼ିଲେ । କୃପ, ଅଶ୍ୱତ୍ଥାମା ଧରି ପକାଇଲେ ତାଙ୍କୁ । ଏହି ସମୟରେ ସେ ଉଠି ପଳାଇଗଲେ । ତା ନ ହୋଇଥିଲେ ସେହିଦିନ ତାଙ୍କର ମୃତ୍ୟୁ ହୋଇଥାନ୍ତା । ସେହିଭଳି ତାଙ୍କ ପିଲାମାନେ ସେହିଦିନ ଭୀମକୁ ବିଷଲଡ଼ୁ ଦେଇ ମାରିବାକୁ ବ୍ୟବସ୍ଥା କରିଥିଲେ । ଭାଗ୍ୟକୁ ଅନନ୍ତନାଗର ଦୁହିତା ବେଲାବଳୀ ସହିତ ତାର ଭେଟ ହେଲା । ନ କହିଲେ କଥା ସରିଥିଲା ।

ବିଦୁର ଗୁଳାଚନ୍ଦ୍ର ଗୁଡ଼ାଏ ପଛକଥା ଭାବି ଭାବି । ମନ ତାଙ୍କର ବିଷାଦଗ୍ରସ୍ତ ହେଲେ ମଧ ଚକ୍ଷୁ ତାଙ୍କର ବଡ଼ ସଜାଗ । ହଠାତ୍ ସେ ଦେଖିଲେ ଗୋଟିଏ ଲୋକ ତାଙ୍କୁ ଦେଖି ଗୋଟାଏ ଅନ୍ଧାରୁଆ କନ୍ଦରେ ପଶି ନିଜକୁ ଲୁଚାଇ ଦେଲା ।

କିଏ ସେ— କିଏ ଏଠି ଲୋକଟି । ଯେଉଁ ତାଙ୍କୁ ଦେଖି ଭୟରେ ନିଜକୁ ଲୁଚାଇ ଦେଉଛୁ ? ଚିତ୍କାର କରି ଉଠିଲେ ବଦ୍ରି କିଏ କିଏ ବୋଲି । ହାତରେ ଧରିଥିବା ଖଣ୍ଡାଟି ତାଙ୍କ ହାତରେ ଝକ୍ ଝକ୍ କରୁଥାଏ । ସେ ଧାଇଁଗଲେ ସେହି କଣକୁ, ଯେଉଁଠିକି ସେହି କଦାକାର ଲୋକଟି ନିଜକୁ ଲୁଚାଇବାକୁ ଛପି ଯାଇଛୁ । ସଙ୍ଗେ ସଙ୍ଗେ ସେ ଧରି ପକାଇଲେ ତାର ହାତଟିକୁ ।

ବଦ୍ରିଙ୍କର ଚିତ୍କାର ଓ ତତ୍ପରତା ଦେଖି ଲୋକଟି କୌଣସି ଉପାୟ ନ ପାଇ ନିଜକୁ ଗୁପ୍ତକରି ରଖିଥିବା ସ୍ଥାନରୁ ଉଠିଆସି ତାଙ୍କ ପାଦତଳେ ପଡ଼ିଗଲା । ବଦ୍ରି ଦେଖିଲେ, ଲୋକଟି ବଡ଼ କଦାକାର ପ୍ରପଞ୍ଚ ଦେହରେ କେଉଁଠି ସୂତାଖିଏ ବି ନାହିଁ, କେବଳ କଟିରେ ଖଣ୍ଡେ ଚିରକନି । ମୁଣ୍ଡରେ ଗୋଟିଏ ହେଲେ କେଶନାହିଁ ପୁରାଲଣ୍ଡା । ସତେ ଯେପରି ଦେହଟି ତାର ଧୂଳି ଧୂସର ।

ଦୟା ଆସିଲା ବଦ୍ରିଙ୍କର ଲୋକଟିର ପ୍ରପଞ୍ଚ ଅବସ୍ଥା ଦେଖି । ତଥାପି ଚିତ୍ତରେ ଦୟା ମୁହଁରେ ନିଷ୍ଠୁର ଭାବ ଫୁଟାଇ ପଚାରିଲେ, ତୁ କିଏ ? ଏଭଳି ହୀନ ପ୍ରପଞ୍ଚ ହୋଇ ଲୁଚି ଲୁଚି ବୁଲୁଛୁ କାହିଁକି ? ତୁ କଣ ରାଜାର ଶତ୍ରୁ ?

କୌଣସି କଥା ଗୁପ୍ତ ନ କରି ଲୋକଟି କହିଲା, ଆଜ୍ଞା ମୁଁ ଗୋଟିଏ ତସ୍କର । ସଙ୍ଗେ ସଙ୍ଗେ ବଦ୍ରି ପଚାରିଲେ ତସ୍କର କେଉଁ ଜାତି ?

ଲୋକଟି ତଳେ ଲମ୍ବହୋଇ ପଡ଼ିଯାଇ କହିଲା, ମୁଁ ଆଜ୍ଞା ଗୋଟାଏ ଚୋର । ଜାତିରେ ମୁଁ ହୀନ । ଘରଦ୍ୱାର କିଛି ନାହିଁ, କେବଳ ଚୋରିକରି ଜୀବନଧାରଣ କରେ ଯାହା ।

ଆଶ୍ଚର୍ଯ୍ୟ ହେଲେ ବଦ୍ରି ତସ୍କରର କଥାଶୁଣି । ସେ ପୁଣି ଟିକିଏ କୋମଳକରି ପଚାରିଲେ, ଆଚ୍ଛା ତୁ ଚୋରିକରୁ କିପରି ?

ଆଜ୍ଞା କାନ୍ଥଖୋଳି ମୁଁ ପ୍ରବେଶ କରେ । ଲୋକମାନେ ରାତିରେ କବାଟ କିଳି ଘରେ ଶୋଇଥାନ୍ତି । ମୁଁ ତାଙ୍କ କାନ୍ଥ କଣାକରି ଘରେ ପଶି ପ୍ରବେଶ କରେ ।

ବଦୁର ପଚାରିଲେ ଆଚ୍ଛା, ତୁ ଯାହାଙ୍କ ଘରେପଶି ଚୋରିକରୁ, ସେମାନେ କଣ ଜାଣିପାରନ୍ତି ନାହିଁ ତୁ ତାଙ୍କଘରେ ପଶିଛୁ ବୋଲି ?

ଠମ୍‌କର କହିଲା ଅଜ୍ଞା ଆପଣ ବୋଧେ ମୋଟେ ଆମକଥା ଜାଣି ନାହାନ୍ତି । ଆପଣ ଜାଣିଥିବେ ଭଗବାନ ଦ୍ରଶଖାନ ଚଉରାଶି ଲକ୍ଷ ଜନ୍ତୁ ସୃଷ୍ଟି କରିଛନ୍ତି । ତାଙ୍କର ମଧ୍ୟରେ ଚଉର ବୋଲି ଏକ ଜାତି ରହିଛି । ଏହି ଜାତି ବଞ୍ଚିବାପାଇଁ ସେ ଲକ୍ଷଣାଦଣ୍ଡ ବୋଲି ଏକ ଅସ୍ତ୍ର ସୃଷ୍ଟି କଲେ । ସେହି ଯନ୍ତ୍ରରେ କାନ୍ଥ ଖୋଳ ଭିତରେ ପଶିଲେ, ଟିକିଏ ହେଲେ ଶବ୍ଦ ହୁଏନାହିଁ, ତେଣୁ କେହି ଜାଣିପାରନ୍ତି ନାହିଁ କିଏ ପଶିଲା ବୋଲି ।

ଆହୁରି ଆଶ୍ଚର୍ଯ୍ୟ ହୋଇଗଲେ ବଦୁର । ସେ କହିଲେ, ନା ନା ସେପରି ନୁହେଁ, ମୋ ପାଖରେ ଟିକିଏ ଭଲକରି ବୁଝାଇ କୁହ, ତୁମର ସେ ଲକ୍ଷଣା ଅସ୍ତ୍ର କିଏ କେତେବେଳେ ତିଆରି କରେ—ତାର ସୃଷ୍ଟିକର୍ତ୍ତା କିଏ ?

ଏଥର ଠମ୍‌କର ଟିକିଏ ନିଜକୁ ଦମ୍ଭକରି କହିଲା, ଆପଣ ଜାଣିଥିବେ ଭୁଲାମାଘ ଅମାବଇ ଦିନ ଚଣ୍ଡୀପୂଜା ହୁଏ । ସେହି ଚଣ୍ଡୀପୂଜା ଦିନ ଯଦି ବିଶାଖା-ନକ୍ଷତ୍ର ପଡୁଥିବ ତେବେ ସେହିଦିନ ଏହିଭଳି ଏକ ଅସ୍ତ୍ର ଗଠନ କରାଯାଇ ପାରିବ । ବିଶାଖାନକ୍ଷତ୍ର ସେଦିନ ଯଦି ନଥିବ ତେବେ ଏହି ଅସ୍ତ୍ର ଗଢ଼ାଯାଇ ପାରିବ ନାହିଁ । ଏହି ଯନ୍ତ୍ରକୁ ଯେଉଁ ମହାରଣା ଗଢ଼ିବ ତାହାର ମଧ୍ୟ କୃତ୍ତିକା ବୃଷରାଶି ହୋଇଥିବ । କୃତ୍ତିକା ବୃଷରାଶିର ମହାରଣାକୁ ଅମାବାଇ ପୂର୍ବ ରାତିରୁ ବରଣକରି ଅଣାଯାଏ । ସକାଳୁ ତାକୁ ସ୍ନାହାନ କରାଇ କଳାବସ୍ତ୍ରଟିଏ ପିନ୍ଧାଇ ଦେବ । ଯେଉଁ ସ୍ତ୍ରୀଲୋକ ସଧବାଭାବେ ମରିଯାଇଥିବେ ତାଙ୍କର ଶଂଖାପଟେ ମହାରଣାର ବାମ ହସ୍ତରେ ଦେବ । ରାତିହେଲା ପରେ ପଥରରୁ ଲୁହାହାର ଅଗ୍ନି ଉତ୍ପନ୍ନକରି ଯେଉଁ ନିଆଁ ବାହାର କରିବ ସେହି ନିଆଁରେ ଶାଳ ପ୍ରସ୍ତୁତ କରିବ । ତା'ପୂର୍ବରୁ ପୂଜା କରିଥିବ ଶାଳଯନ୍ତ୍ରକୁ । ରାତି ପ୍ରହରରେ ହେବା ମାତ୍ରେ ଶୃଗାଳ ( ଅବଳା ) ମାନେ ଯେତେବେଳେ ରାବଦେବେ ସେତେବେଳେ ଲୁହାକୁ ଅଗ୍ନିରେ ଶିଝାଇବ । ରାତି ତିନିପ୍ରହରେ ହେବାମାତ୍ରେ ଗୋଟିଏ କଳାବୋଦା ନେଇ ଚଉରୁଣୀ ଦେବୀଙ୍କ ପାଖରେ

ବଳି ଦେଇ ତାହାର ରକ୍ତ ଏବଂ ଘୃତ ଚଉରୁଣୀ ଦେବୀଙ୍କୁ ସମର୍ପଣ କରିବ । ତା'ପରେ ଲୁହାକୁ ବିଧାର କରି ଅସ୍ତ୍ର ପ୍ରସ୍ତୁତ କରିବ । ଏହିଭଳି ଶସ୍ତ୍ରଟିଏ ନିଜେ ବ୍ରହ୍ମା ପ୍ରଥମେ ସର୍ଜନା କରି କୃଷ୍ଣଙ୍କୁ ଦେଇଥିଲେ ।

ବିଦୁର କହିଲେ, କୃଷ୍ଣ କଣ ବୈର କରିବାକୁ ଯାଇଥିଲେ ଯେ, ବ୍ରହ୍ମା ତାଙ୍କୁ ଏଭଳି ଏକ ଅସ୍ତ୍ର ପ୍ରସ୍ତୁତ କରି ଦେଇଥିଲେ ?

ଠାକୁର କହିଲା, ଆପଣ କଣ ଜାଣି ନାହାନ୍ତି ଶ୍ରୀକୃଷ୍ଣ ଗୋପପୁରରେ ଥିଲେ ? ସେହି ସମୟରେ ଚନ୍ଦ୍ରାବଳୀ—ରାଧିକା ଆଦି ଷୋଳ ସହସ୍ର ଗୋପୀଙ୍କ ସହିତ ତାଙ୍କର ସଦ୍‌ଭାବ ଥିଲା । ସମସ୍ତଙ୍କଠାରୁ ଅଧିକ ପୀରତି ଥିଲା ରାଧା ସହିତ । ରାଧାର ସ୍ୱାମୀ ଚନ୍ଦ୍ରସେଣ ଗୁଆଳ ( ଗଉଡ଼ ) । ସେତ ରାଧାଙ୍କୁ ଦେଖି ପାରେ ନାହିଁ । ରାତିରେ ଚନ୍ଦ୍ରସେଣ ରାଧାଙ୍କୁ ପାଖରେ ଧରି ଶୋଇଛି । ସେ ଯେଉଁ ଘରେ ଶୋଇଥାଏ ସେ ଘରର କବାଟ କିଳେଣି ଭଲ ଭାବରେ ଦେଇ ସେ ଶୋଇଥାଏ । ଏଣେ ବନମାଳୀ ମଦନ ଆରତେ ବ୍ୟସ୍ତବ୍ୟସ୍ତ । ରାଧାର ଘର ଚାରିପାଖରେ ବୁଲି ବୁଲି ସେ ବ୍ୟସ୍ତ ହୋଇ ପଡ଼ିଲେ । ଦିଆ ଯାଇଥିବା କବାଟକୁ ଥରକୁ ଥର ପେଲି ଫିଟାଇ ପାରିଲେ ନାହିଁ ସେହି କବାଟକୁ । ଶେଷଥର କବାଟ ପେଲିଲା ବେଳେ ତାଙ୍କର ଅସାବଧାନତା ଯୋଗୁଁ କବାଟର ଗୋଟାଏ କଣ୍ଟା ମୁଣ୍ଡରେ ବାଜି ରକ୍ତ ବୋହିବାକୁ ଲାଗିଲା ।

ଶ୍ରୀକୃଷ୍ଣ ଚିନ୍ତା କଲେ ବ୍ରହ୍ମାଙ୍କୁ । ବ୍ରହ୍ମାଦି ଦେବତାମାନେ ତ କଂସକୁ ବଧ କରିବାପାଇଁ ତାଙ୍କୁ ମର୍ତ୍ତ୍ୟପୁରକୁ ପଠାଇଛନ୍ତି । ତା ଆର ଜନ୍ମରେ ରାମ ଅବତାରରେ ସେ ବହୁତ ଦୁଃଖ ପାଇଥିଲେ । ତେଣୁ ବ୍ରହ୍ମା ତାଙ୍କୁ କହିଥିଲେ, ଏଥର ଆପଣଙ୍କ ପାଇଁ ଆମେ ଦୁଧ-ଦହି-ଛେନା-ଲହୁଣୀ ଆଦି ବହୁ ସ୍ୱାଦୁ ଖାଦ୍ୟ ସହିତ ଷୋଳସହସ୍ର ସୁନ୍ଦରୀ ରମଣୀଙ୍କ ସହିତ ରାସକ୍ରୀଡ଼ା କରାଇବୁ । ତେଣୁ ବ୍ରହ୍ମାଙ୍କୁ ଚିନ୍ତା କଲା ମାତ୍ରେ ସେ ତାଙ୍କ ପାଖରେ ଉପସ୍ଥିତ ହେଲେ । ସେ କଟାକ୍ଷ ମନ୍ତ୍ର ପଢ଼ି ଶ୍ରୀକୃଷ୍ଣଙ୍କ କ୍ଷତକୁ ଫୁଙ୍କି ଦେବାମାତ୍ରେ ରକ୍ତ ବୋହିବା ବନ୍ଦ ହୋଇଗଲା । ସେ

ସାଙ୍ଗରେ ଗୋଟିଏ ଲକ୍ଷଣା ଯନ୍ତ୍ର ଆଣିଥିଲେ । ତାହା କୃଷ୍ଣଙ୍କୁ ଦେଇ କହିଲେ, ଏହାର ସାହାଯ୍ୟରେ ଚନ୍ଦ୍ରସେଣା କାନ୍ଥ ଖୋଳ ଭିତରକୁ ବିଜେ କର ।

ନେବଦବର ବ୍ରହ୍ମାଙ୍କଠାରୁ କେବଳ ଏହି ଲକ୍ଷଣା ଅସ୍ତ୍ର ଶ୍ରୀକୃଷ୍ଣ ପାଇ ନ ଥିଲେ । ତା ସହିତ ଅଞ୍ଜନ ବଟ୍ୟା, ନିଦ୍ରା ଧୂଳି ମଧ୍ୟ ସେ ଦେଇଥିଲେ । ଶ୍ରୀକୃଷ୍ଣ ସେହି ଲକ୍ଷଣା ଅସ୍ତ୍ରଦ୍ୱାରା ଚନ୍ଦ୍ରସେଣାର ପଥର କାନ୍ଥକୁ ଖୋଳି ପଶିଗଲେ ତା ଘର ଭିତରକୁ । ଘର ଭିତର ପୂରାପୂରି ଅନ୍ଧାର । ବ୍ରହ୍ମାଙ୍କ ଦେଇଥିବା ଅଞ୍ଜନ ଆଖିରେ ମାରି ଦେହିବାମାତ୍ରେ ଦିନ ଭଳି ସେହି ଚନ୍ଦ୍ରସେଣାର ଅନ୍ଧାର ଘର ଦେଖାଗଲା । କାଳେ ଚନ୍ଦ୍ରସେଣା ଉଠିପଡ଼ିବ ସେଥିପାଇଁ ଯେଉଁ ମନ୍ତ୍ରଧୂଳି ଆଣିଥିଲେ ତାହା ଚନ୍ଦ୍ରସେଣା ଉପରେ ପକାଇଦେବା ମାତ୍ରେ ତାର ନିଦ ପୂର୍ବଠାରୁ ଅଧିକ ହୋଇଗଲା ।

ଚନ୍ଦ୍ରସେଣା ଉପରେ ରାଧା ସନ୍ତୁଷ୍ଟ ନୁହନ୍ତି । ସେ ସର୍ବଦା ଚାହାନ୍ତି ଶ୍ରୀକୃଷ୍ଣଙ୍କ ଅଙ୍ଗସଙ୍ଗ । ରାତିରେ ଚନ୍ଦ୍ରସେଣା କୋଳରେ ରାଧା ଶୋଇଥିଲେ ମଧ୍ୟ କାମ ବାଧାରେ ସେ ଛଟପଟ । ଶ୍ରୀକୃଷ୍ଣ ତାଙ୍କ ହାତ ଧରିବା ମାତ୍ରେ ସେ ଉଠିପଡ଼ି କେଶବଙ୍କ ସହିତ ପ୍ରୀତି ରସରେ ମାତିଗଲେ । ସେ ପର୍ବ ସମାପନ କରି ପୁଣି ଫେରିଗଲେ କୃଷ୍ଣ ସେହି ବାଟ ଦେଇ ।

ବିଦୁର ମନଯୋଗ ସହକାରେ ଶୁଣୁଥାନ୍ତି ଈଶ୍ୱରଙ୍କ କଥା । ଈଶ୍ୱର କହିଲା, କୃଷ୍ଣ ବହୁଦିନ ସେହି ବାଟରେ ରାଧା ଘରକୁ ବିଜେ କରି ରାଧା ସହିତ ପ୍ରୀତି କରି ଫେରିଯାନ୍ତି । ସେ ବଡ଼ ଆନନ୍ଦିତ ହେଲେ ସେହି ଅସ୍ତ୍ର ଓ ଅଞ୍ଜନ, ଧୂଳି ଉପରେ । ଶେଷରେ ସେହି ଅସ୍ତ୍ରକୁ ଲକ୍ଷଣା ନାମ ଦେଇ ମୋତେ ଅସ୍ତ୍ର—ଅଞ୍ଜନ—ନିଦଧୂଳି ଦେଲେ ।

ବିଦୁର ବିସ୍ମିତ ହେଲେ ଈଶ୍ୱର କଥାରେ । ସେ କହିଲେ, ଆଗୁ ତୁମ ସହିତ ଶ୍ରୀକୃଷ୍ଣଙ୍କର କପରି ସଂପର୍କ ହେଲା ଯେ ତୁମକୁ ସେ ଏଭଳି ଜିନିଷତକ ଦେଲେ ?

ଈଶ୍ୱର ଅତି ବିନୟୀ ହୋଇ କହିଲା—ଏକଦା ରାଧା ଯେତେବେଳେ ଶ୍ରୀକୃଷ୍ଣଙ୍କୁ ଖୋଜି ଖୋଜି ନ ପାଇଲେ, ସେତେବେଳେ ସେହି ସରହ ସୁନ୍ଦରୀ ଦୂତୀକୁ ପାଖକୁ ଡାକିଲେ । ଦୂତୀ ସ୍ୱର୍ଗନାରୀ । ତାର ବୟସ ବହୁତ ହେଲେ କଣ ହେବ ସ୍ତମ୍ଭନ ମୋହନ ବଶ୍ୟ ଉଚ୍ଚାଟନ ବିଦ୍ୟା ତାକୁ ଜଣା । ଅସାଧ୍ୟକୁ ସାଧନ କରିବାକୁ ଏକମାତ୍ର ସେହି ସରହ ସୁନ୍ଦରୀ ଦୂତୀ ବ୍ୟତୀତ ଆଉ କେହି ନାହାନ୍ତି । ଏଭଳି କିଛି ନାହିଁ ଯାହାକି ସେ କରିପାରିବ ନାହିଁ । ସମସ୍ତେ ତାକୁ ନିନ୍ଦା କରନ୍ତି । ମାତ୍ର ଥରେ ଯେ ତା ସଂପର୍କରେ ଆସିଛି ସେ କେବେ ତାକୁ ଭୁଲି ପାରିବ ନାହିଁ । ସେ ପ୍ରସନ୍ନ ନ ହେଲେ ପରମପୁରୁଷଙ୍କ ସାକ୍ଷାତ ଯୋଗୀ ମୁନି ବି ପାଇପାରନ୍ତି ନାହିଁ । ତାର ରୂପ ପୁଣି ରୂଅପ । ସେ ସୁନ୍ଦରୀ ହେଲେ ବି ସାଧାରଣଙ୍କ ଆଖିରେ ଅସୁନ୍ଦରୀ ।

ବଇଶାଖ ଶୁକ୍ଳପକ୍ଷ ଚଉଠୀ ସେଦିନ ହୋଇଥାଏ । ସୁନ୍ଦରୀ ରୋହିଣୀ କ୍ଷେତ୍ରଠାରୁ ଚନ୍ଦ୍ର ଆସିଯାଇଥାନ୍ତି ମୃଗଶିର ନକ୍ଷତ୍ରକୁ । ରାଧାର ଶାଶୁ ଯାଇଥାଏ ତାର ଝିଅ ଘରକୁ, ଆଉ ବସନ୍ତ ଉତ୍ସବ ମଥୁରାରେ ହେଉଥିବା ହେତୁ ଗୋପର ସବୁ ଗଉଡ଼େ ଦୁଧ ଦହି ଧରି କଂସ ଗୁମୁକୁ ଯାଇଥାନ୍ତି । ଏହି ସୁଯୋଗକୁ ରାଧା ଏଡ଼ାଇ ଦେବାକୁ ଇଚ୍ଛା କଲା ନାହିଁ । ରାତି ହେଲେ କହ୍ନେଇ ସିନା ତା ପୁରକୁ ବିଜେ କରିବେ, ସେହି ଅନ୍ଧାରରେ ଖାବ ପରମ କେଳି ଭଳି ସେ ଦୁହେଁ ରାସ ଖେଳରେ ମଜ୍ଜି ଯିବେ । ମାତ୍ର ଦିବସରେ ଯେତେବେଳେ ସୁଯୋଗ ମିଳିଛି ସେତେବେଳେ ସେହି ସମୟକୁ ଉପଭୋଗ ନ କଲେ ପସ୍ତେଇବାକୁ ପଡ଼ିବ ।

ରାଧିକା ଡାକି ଆଣିଲେ ସେହି ସରହ ସୁନ୍ଦରୀ ଦୂତୀକୁ । ନିଜର ଅଳଂକାରମାନ ନିଜ ଦେହରୁ କାଢ଼ି ମଣ୍ଡି ଦେଲେ ତା ଦେହରେ । ନିଜେ ପିନ୍ଧି ଥିବା ଅଲେଖ ତିଳକ ବସ୍ତ୍ରକୁ ନିଜ ଅଙ୍ଗରୁ ପାଲଟି ପିନ୍ଧାଇ ଦେଲେ ତାକୁ । ତାପରେ ତା ମୁଣ୍ଡର କବେରୀର ଭାର ଖୋଷା ସରହ ସୁନ୍ଦରୀ ମୁଣ୍ଡରେ ଖୋଷି ପୁଷ୍ପମାଳ ଖଞ୍ଜି ଦେଲେ ସେହି ଖୋଷାରେ । ଦେହରେ ବୋଳି ଦେଲେ କସ୍ତୁରୀର ଗନ୍ଧ । ନିଜର ତାମ୍ବୁଳ ତାକୁ ଭୁଞ୍ଜାଇ ତା ଅଧରକୁ ସୁରଙ୍ଗ କରି ତୋଳିଲେ ।

ନିଜ ପାଦର ନେପୁର ପିନ୍ଧାଇ ଦେଲେ ଦୂତିକା ପାଦରେ । ତାପରେ ତାକୁ ଟିକିଏ ଚାହିଁ ହସି ଉଠିଲେ ରାଧା । ଆଃ କି ସୁନ୍ଦର ଦେଖାଯାଉଛି ସତେ ଦୂତୀ ଆଜି !

ମରକତ ବୃନ୍ଦସଖି ଦୂତୀକୁ ପ୍ରବେଶ କରି ତାଙ୍କୁ ବିନୟ ସହକାରେ କହିଲେ, ସଖୀଟି ତୁ ଟିକିଏ ବେଗ ହୋଇ ଯାଇ ନନ୍ଦ ପୁଅ ଶ୍ରୀକୃଷ୍ଣଙ୍କୁ ଡାକ ଆଣ । ସବୁଦିନେ ଅନ୍ଧକାରରେ ଆମେ ପରସ୍ପର ମିଳିତ ଏକ ହୋଇ ଯାଇଥାଉ । ଆଜି କିନ୍ତୁ ବିପରୀତ ଯୋଗ ସୃଷ୍ଟିଛି । ସବୁଦିନେ ସମ୍ଭୋଗ ପାଇଁ କୃଷ୍ଣ ସମସ୍ତଙ୍କୁ ନିଜ ଧିକାରରେ ବଶ କରି ଶୁଆଇ ଦେଇଥାନ୍ତି ଗାଢ଼ ନିଦରେ କିନ୍ତୁ ଆଜି କେହି ନାହାନ୍ତି । ଅନ୍ଧକାରରେ ଦିନବତ୍ ସମ୍ପର୍କ ଭଳି ଆମେ ରାସକ୍ରୀଡ଼ାରେ ମଗ୍ନ ରହୁ । ମାତ୍ର ଆଜି ଦିବସର ସ୍ୱଚ୍ଛ ଆଲୋକରେ କେହି ନ ଥିଲା ବେଳେ ଦୁହେଁ ଜାଗ୍ରତ ରହି ରସକେଳି କରିବୁ । ଏହି ସନ୍ଦେଶ ତୁମେ ଟିକିଏ ଯାଇ କୃଷ୍ଣଙ୍କୁ ଦେଇ ମୋ ପୁରକୁ ଡାକ ଆଣ । ତାଙ୍କ ବିନା ମୋତେ କିଛି ଭଲ ଲାଗୁନାହିଁ ।

ବୃନ୍ଦସଖି ରାଧିକାଙ୍କ ବିନୟ ବଚନରେ ମରକତ ବୃନ୍ଦସଖି ଶ୍ରୀକୃଷ୍ଣଙ୍କ ପାଖକୁ ଚାଲିଲା ।

ଶ୍ରୀକୃଷ୍ଣ ରାଧାଙ୍କ ପାଇଁ ପାଗଳ । ମାଧବୀ ଲତା ତଳେ ସେ ଅପେକ୍ଷା କରିଛନ୍ତି ରାଧାଙ୍କୁ । ବୈଶାଖର ସୂର୍ଯ୍ୟତାପ ଠାରୁ ତାଙ୍କ ହୃଦୟର ତାପ ଅଧିକ । ସେ ତାପରେ ସେ ଏଭଳି ଦଗ୍ଧ ଯେ ସେ ନିଜକୁ ବି ଭୁଲି ଗଲେଣି । ତାଙ୍କୁ ରାଧା ଛଡ଼ା ଆଜି କିଛି ଭଲ ଲାଗୁନାହିଁ । ସୁନ୍ଦରୀ ରାଧାର ସୁନ୍ଦର ବଦନ, ତାର ମିଠା ମିଠା ହସ, କଣେଇ କଣେଇ ଚାହିଁବା ତାଙ୍କୁ ଏଭଳି ପ୍ରେମ ପାଗଳ କରିଥାଏ ଯହିଁରୁ ଗୋଟିଏ ଦଣ୍ଡକୁ ଗୋଟିଏ ଦିନ ଭଳି ମନେ କରୁଥାନ୍ତି । ସେ ଜାଣିଥାନ୍ତି ଗଉଡ଼ମାନେ ମଥୁରାକୁ ଯାଇଛନ୍ତି, ବାକି ତାର ଶାଶୁକୁ ଭୁଲେଇ ସେ ନିଶ୍ଚୟ ଯମୁନାକୂଳକୁ ଧାଇଁ ଆସିବ । ଆଜି ଉଜାଣି ବହିବ ଯମୁନାର ଜଳ ଗଙ୍ଗାକୁ ପ୍ଳାବନ କରି । ବଂଶୀର ମଧୁର ସ୍ୱନରେ ବିହ୍ୱଳିତ ହୋଇପଡ଼ିବ ଯମୁନା । ଯମୁନାର ନେପୁର ନିକ୍ୱଣ ତାଙ୍କ କାନରେ ସୃଷ୍ଟି କରିବ ଅଭିନବ ଭାବ ।

ତା ପରେ ଦୁହେଁ ଦୁହିଁଙ୍କୁ ଜଡ଼ାଇ ଏକ ହୋଇଯିବେ । ବିରହ ହୋଇଯିବ ରାସ—ରାସ ହୋଇଯିବ ବିରହ । ଆମେ ଦୁହେଁ ବିଜ୍ଞାପିତ କରିବୁ ନାରୀ ପୁରୁଷ ଦୁହେଁ ଗୋଟିଏ ଅଙ୍ଗର ଦୁଇଟି ବିକାଶ ।

ହଠାତ୍ ମାଧବୀ ଲତା ତଳେ ଶ୍ରୀକୃଷ୍ଣ ଶୁଣିବାକୁ ପାଇଲେ ରାଧାର ନୂପୁର ଶବ୍ଦ । ମନ ତାଙ୍କର ଛନ୍ନ ଛନ୍ନ । ଚାଲିବାଟକୁ ଅନାଇଲେ । ନା ତ, ଚାଲିବାଟରେ କେହି ଦିଶୁ ନାହାନ୍ତି । ମାତ୍ର ବେଳକୁ ବେଳ ରାଧାର ନୂପୁରର ଶବ୍ଦ ନିକଟରୁ ନିକଟତର ହୋଇ ଶୁଭୁଥାଏ । ହଠାତ୍ ଏଣେ ତେଣେ ଚାହିଁ ଦେଖିଲେ, ନିକଟର କଦମ୍ବ ଉପରେ ଚଢ଼ି ଅନାଇଲେ, ହେଇ ଅବାଟକୁ ବାଟରେ ପରିଣତ କରି ରାଧା ଆସୁଛି । ତାର ପିନ୍ଧା ପରିତ ଦକ୍ଷିଣୀ ପବନରେ ଫର ଫର ହୋଇ ଉଡ଼ୁଛି । ତା ଅଙ୍ଗର କସ୍ତୁରୀଗନ୍ଧ ତାଙ୍କ ନାସିକାରେ ବାଜି ତାଙ୍କୁ ଆହୁରି ବିମୁଗ୍ଧ କରି ତୋଳୁଛି । ହେଇ ଟିକିଏ ଦୂରରୁ ଦେଖାଯାଉଛି ସେ— ଦେଖା-ଯାଉଛି ତା ମୁଣ୍ଡର ଜୁଡ଼ା । କୃଷ୍ଣ କବରୀର ଶ୍ୱେତ ପୁଷ୍ପ ସତେ ଯେପରି ତମ ରେ ସ୍ୱପ୍ନର ଆଲୁଅ ।

ପ୍ରେମ ବିଭୋର ହୋଇ ଡେଇଁ ପଡ଼ିଲେ କୃଷ୍ଣ କଦମ୍ବ ଗଛ ଉପରୁ ତଳକୁ । ଆନନ୍ଦ ଅଧୀର ହୋଇ ଭିଡ଼ି ଧରିଲେ ଦୂତିକାକୁ ନିଜ ବକ୍ଷରେ । ତା' ଶରୀର ମଧୁର ଗନ୍ଧ ମନଭରି ଆଘ୍ରାଣ କଲେ । ତା' ମୁଖରେ ଭରିଦେଲେ ଉଚ୍ଛୁଳା ପ୍ରେମର ଆଦିମ ସଙ୍କେତ । ସେ ଏତେ ପ୍ରେମବିଭୋର ହୋଇ ପଡ଼ିଥାନ୍ତି ଯେ ସେ ଦୂତୀର ମୁହଁଟିକୁ ଦେଖି ମଧ୍ୟ ଦେଖିପାରୁ ନାହାନ୍ତି । ଇଅଁଳା ପିଅଁଳା ଦୁହେଁ ଏକ ହୋଇ ଶୁଷୁମ୍ଣାରେ ଗଲେ କେଉଁ ପୁରୁଷର ଅବା ଜ୍ଞାନ ରହିବ ପର ଆପଣା ଚିହ୍ନିବାକୁ ।

ହାତରେ ଟାଣି ଖୋଲି ଦେଲେ ଦୂତିକାର ପିନ୍ଧିଲା ଅଲେଖ ତିଳକ ବସ୍ତ୍ର । ଏକେତ କୁଞ୍ଜ ଲତାରେ ପରିପୂର୍ଣ୍ଣ ଘୋରବନ । ତା ଉପରେ ବହିଯାଉଛି ଋତୁରାଜ ଦେହ ମନକୁ ଆନନ୍ଦ ବିଭୋର କରି । କେଉଁ ବୃକ୍ଷଶାଖାରେ ବସି ପିକ ମେଲି ଦେଇଛି ତାର ସୁମଧୁର କଣ୍ଠ ।

ମୁହୂର୍ତ୍ତକ ମଧ୍ୟରେ ଦୁଇଟି ଅଙ୍ଗ ଏକ ହୋଇଗଲା । ଯେପରି ପୃଥିବୀମାତା ଆକାଶ ପିତାଙ୍କ ମଧ୍ୟର ସୂକ୍ଷ୍ମମାତ୍ର ହିଁ ବ୍ୟବଧାନ ନାହିଁ । ଗୃହେଟି ଭୁଜ ଦୁଇଟି ବକ୍ଷକୁ ଏକ କରି ତୋଳିଲା ।

ଆରୋହ କ୍ରମ ପରେ କିଛି କ୍ଷଣ ସ୍ଥିତି । ତା ପରେ ଅବରୋହ କ୍ରମ । ମଦନ ଆରମ୍ଭରେ ଅସମ୍ଭାଳ ବନମାଳୀ ଅବରୋହ ପରେ ଯେତେବେଳେ ଫେରି ଆସିଲେ ନିଜେ ନିଜ ମଧ୍ୟକୁ, ସେତେବେଳେ ଦେଖିଲେ ଯାହା ସହିତ ସେ ରତି ରଙ୍ଗରେ ମିଶି ଏକ ହୋଇଯାଇଥିଲେ, ସେ ରାଧା ନୁହନ୍ତି, ସେ କେଉଁ କାଳର ସରହ ସୁନ୍ଦରୀ ସେହି ମସିହା ବୁଢ଼ୀ କୁବ୍ଜା ।

ଲଜ୍ଜିତ ହେଲେ ଶ୍ରୀକୃଷ୍ଣ । ଯେତେ ସେ ଏ କଣ ନ କଲେ । ଯୁବତୀ ବୋଲି ଗୋଟାଏ ବୁଢ଼ୀକୁ ରସିଲେ । ତା' ବୟସର ବୁଢ଼ୀ ଏ ପୃଥିବୀରେ ଆଉ କେହି ଥିଲା ଭଳି ତ ମନେ ହେଉନାହିଁ । ପାଚିଲା ତା ମୁଣ୍ଡର କେଶ ପୁଳାକ, ଗଳିତ ଖଳିତ ତାର କାୟା ଅତି ପ୍ରପଞ୍ଚ କେନ୍ଦୁକାଠ ଭଳି ଦେଖାଯାଉଛି । ଅତିହିଁ ଉଚ୍ଛର୍ଗ— ପ୍ରଳମ୍ବ ତାର ହାତ ଗୋଡ଼ ।

ଏହି କଦାକାର ସ୍ତ୍ରୀ ଲୋକଟି ସେତେବେଳେ ଦେଖାଯାଉଥିଲା ତାଙ୍କୁ ଅତି ସୁନ୍ଦରୀ ସେହି ପ୍ରେମ ପାଗଳୀ ରାଧିକା ଭଳି । ତାର ପାଚିଲା ବାଳ ଦେଖି ମନେ ହେଉଥିଲା ଯେତେ ଯେପରି ରାଧା ମୁଣ୍ଡରେ ସେବତୀ ଫୁଲର ମାଳାଟିଏ ବାନ୍ଧି ଦେଇଛି । ରାଧାର ଗହଣା ତାଙ୍କୁ ଅଧିକ ସତ୍ୟ ମଧ୍ୟକୁ ଟାଣି ନେଲା । ନିଜେ ତ କାମେ ଅତ୍ୟାଷ୍ଟମ ହୋଇଥିଲେ, ତେଣୁ ସେ କିଛି ଜାଣି ପାରିଲେ ନାହିଁ । ବାଳୁତ ପୁରୁଷକୁ ବୃଦ୍ଧ ସ୍ତ୍ରୀର ହାବ ଟାଣି ନେଲା ତାଙ୍କ ଶେଷ ପର୍ଯ୍ୟନ୍ତ ।

ନାସିକାରେ ହାତ ଦେଇ ହସିଲେ ଜନାର୍ଦ୍ଦନ । ସେ ଏଭଳି ଲଜ୍ଜିତ ହୋଇଯାଇଥିଲେ ଯେ ପଞ୍ଚୁମନ ତାଙ୍କର ବସନ ଯାଇଥିଲା, ଉଲଗ୍ନ ଦେହକୁ ଲୌକିକ ବସନରେ ଆଭରିତ କରିବାକୁ ଭୁଲି ଯାଇଥିଲେ । ସେ କେବଳ ନାକରେ ହାତ ଦେଇ ହସୁଥିଲେ ।

କେଶବ ଲଜ୍ଜାରେ ମଥାପାତି ବସିଥିଲା ବେଳେ ଦୂତୀ ମଧ୍ୟ ଲଜ୍ଜିତା ହୋଇ ନିଜେ ପିନ୍ଧି ଥିବା ଲୁଗାକୁ ଭୁଲି କାହ୍ନୁଙ୍କ ଲୁଗାଟି ପିନ୍ଧି ପଳାଇ ଗଲେ ଏକମୁହାଁ ହୋଇ ।

ଶ୍ରୀକୃଷ୍ଣ ଲଜ୍ଜିତ ଏବଂ ଚିନ୍ତିତ । ସତେ ସେ କଣ ନ କଲେ ଆଜି ? ଯୁବତୀ ରାଧିକା ବୋଲି କେଉଁ କାଳର ମସିଡ଼ା ବୁଢ଼ୀଟାକୁ ପ୍ରେମ କଲେ । ସେ ଯଦି କାମବାଧାରେ ଏଭଳି ଭୁଲିଯାଇ ପାରନ୍ତି ତେବେ ମାନବମାନେ କଣ ନ କରିବେ ? ପୁଣି ଦୂତୀ ଯଦି ରାଧାଙ୍କୁ ଯାଇ ଏ କଥା କହିଦିଏ ତେବେ ରାଧା ବଡ଼ ଉପହାସ କରିବ ।

ହେ ସରସ୍ୱତୀ ତୁମେ ଦୂତୀକାର କଣ୍ଠରେ ବାସକର, ସେ ଯେପରି ଏ କଥା ରାଧାକୁ ନକହନ୍ତୁ । ହସି ଉଠିଲେ ମନକୁ ମନ ଶ୍ରୀକୃଷ୍ଣ ଟିକକ ପରେ । ସତେ ସତେ ସେ କେତେ ବୋକା । ସ୍ତ୍ରୀମାନେ ବଡ଼ ଗର୍ବୀ । ପରଦାର ଶୃଙ୍ଗାର ସେମାନେ କେବେ ଅନ୍ୟ ଆଗରେ ପ୍ରକାଶ କରନ୍ତି ନାହିଁ । ଏଠାରେ ପୁଣି ଦୂତୀ ଏକେତ ବୁଢ଼ୀ । କେହି ତାକୁ ରସୁ ନାହାନ୍ତି । ଭାଗ୍ୟକୁ ଯଦି ଜଣେ ଯୁବକର ପ୍ରେମ ତାକୁ ମିଳିଗଲା, ତେବେ ସେ ଅନ୍ୟ କାହା କଥା ଛାଡ଼, ରାଧିକାକୁ କହିବ କାହିଁକି ? ଯଦି କହେ ତେବେ ରାଧା ତା ଉପରେ ବିରକ୍ତ ହେବ । ତାକୁ ସେ ପଠାଇଥିଲା ତାକ ଆଣିବାକୁ ମାତ୍ର ସେ କଲା କଣ ? ନିଜ ଅଙ୍ଗ ଦାନ କରି ତାଙ୍କ ମନ ତୋଷିଲା ?

କୃଷ୍ଣ ଅନାଇଲେ ପିନ୍ଧିବା ବସ୍ତ୍ର । ଆରେ ଏ ଯେ ଦୂତୀର ବସ୍ତ୍ର ଭଳି ପଡ଼ୁଛି । ଦୂତୀ ତାଙ୍କ ନିଜ ବସ୍ତ୍ର ପିନ୍ଧି ପଳାଇଛି । ହୋ ହୋ କରି ହସି ଉଠିଲେ ପୁଣି । ଆରେ ମଦନ ତୁ କଣ ନ କଲୁ । ପରଦାର ସ୍ତ୍ରୀର ଅଙ୍କୁଶ ଅମୃତ ଭଳି ସୁଆଦ ହେଲେ ବି ପରେ ବଡ଼ ପ୍ରମାଦ ।

ଦୂତୀ ଏକମୁହାଁ ହୋଇ ଫେରିଗଲେ କୃଷ୍ଣ ବିରହିଣୀ ରାଧାଙ୍କ ପାଖକୁ । ରାଧା ବସିଛନ୍ତି ଅଲେଖ ତଳକୁ ହୋଇ । ଦୁଃଖ ଖାଲରେ ବିପନ୍ତି, ମୁହଁ ଚାର ବରସ ।

ରାଧା ସରହ ସୁନ୍ଦରୀ ଦୂତୀକୁ ଦେଖୁ ଦେଖୁ କହିଲେ, ଆଲୋ ତୁ ତାଙ୍କ ସାଙ୍ଗରେ ନ ଆଣି ଏକା ଆସିଲୁ କପରି ? ସେ କଣ ତୋ ପଛେ ପଛେ ଆସୁଛନ୍ତି ବୋଲି କହିଲେ ?

ଦୂତୀ ମୁହଁଟି ଶୁଖାଇ କହିଲେ, ଆଲୋ ତୋର ଯୋଉ କଥା ନା ! ତୁ ଯେପରି ତାଙ୍କ ଆସିବା ବାଟକୁ ଏକ ଧ୍ୟାନରେ ଅନାଇ ବସି ରହିଛୁ ସେ ସେଭଳି ହେଲେ ସିନା ହେବ । ମୁଁ ତ ଦେଖିଲି ତୋ ପ୍ରତି ତାଙ୍କର ଟିକିଏ ହେଲେ ସରାଗ ନାହିଁ । ସେ ତ ଜାଣି ପାରୁନାହାନ୍ତି, କହୁଛନ୍ତି କେଉଁ ରାଧା ବୋଲି । ଆଉ ତୁ ଖାଲି ମୋତେ କହିବୁ !

ଆଶ୍ଚର୍ଯ୍ୟ ହେଲେ ରାଧା ଦୂତୀର କଥା ଶୁଣି । ସେ ଦୂତୀ ଆଡ଼କୁ ଅନାଇ କଣ ତାକୁ କହିବେ କିଛି ଠିକ୍ କରିପାରିଲେ ନାହିଁ । ହଠାତ୍ ତା ମୁହଁର ବିରସ ଭାବ ଦେଖି କହିଲେ, ଆଲୋ ତୋ ଅଧର ଏଭଳି ଶୁଖିଲି ଶୁଖିଲି କାହିଁକି ଦିଶୁଛି— ସତେ ଯେପରି କିଏ ତୋ ଅଧରକୁ ଘନଘନ ଚୁମ୍ବନ ଦେଇ ରସତକ ଟାଣି ନେଇଛି ।

ଛି ଛି, ତୁ ଏଇ ଯେଉଁ କଥାଗୁଡ଼ାକ ସବୁ କହୁଛୁ ! କେଉଁ କାଳରେ ମୁଁ ସିନା ଦିବ୍ୟ ସୁନ୍ଦରୀ ଥିଲି, ଏ ଧରାର ମଣିଷଗୁଡ଼ାକୁ କିଏ ବା ପଚାରେ, ଋଷିମୁନିଙ୍କ ସହିତ ଦେବତାମାନେ ମୋ ମୁହଁର ଟିକିଏ ମୁରୁକି ହସ ଦେଖିବା ପାଇଁ ଧାଡ଼ ଦେଉଥିଲେ । ଆଜି କଣ ଆଉ ସେହିଭଳି ଅଛି ଯେ ମୋ ମୁହଁରେ କିଏ ଚୁମ୍ବନ ଦେବ ? ଖାଲି ନାଁ । ଟା ମୋର ରହିଛି ସହଜ ସୁନ୍ଦରୀ । ସେ ଦିନ ଅନ୍ୟମାନେ ବଶ ହେଉଥିଲେ ମୋ ରୂପ ଦେଖି, ମାତ୍ର ଆଜି ଅନ୍ୟଙ୍କ ପାଇଁ ମୁଁ ପୁରୁଷଙ୍କୁ ବଶ କରଉଛି । ଆଲୋ ତୋ ପାଇଁ ସେହି କାଳିଆ କାହ୍ନୁକୁ ମୁଁ କଣ ଅଳ୍ପ ଗୁହାରି ବାଣୀ କହିଛି ! କହି କହି ମୋ ତଣ୍ଟି ଶୁଖିଗଲା, ତେଣୁ ମୁହଁଟି ବିରସ ଦିଶୁଥିବ ।

ହଉ ହେଲା ମୋ ପାଇଁ ଗୁହାରିବାଣୀ କହି ତୋ ତଣ୍ଟି ଶୁଖିଗଲା—କିନ୍ତୁ ତୁ ଗଲାବେଳେ ତୋ ମୁଣ୍ଡର ଖୋପି ଖୋସିଥିଲୁ କେଡ଼େ ସୁସଜ୍ଜ କରି । ବର୍ତ୍ତମାନ ତ

ଦେଖୁଛୁ ମେ ଆଉ ସେ ଭଳି ନାହିଁ । ଆଉଳା ବାଉଳା ହୋଇ ସେ ମୁହଁ ଉପରକୁ ଖସି ପଡ଼ୁଛି । ଏ ଭଳି ହେଲା କପରି ?

ଦୂତିକା ସଙ୍ଗେ ସଙ୍ଗେ କହିଲେ, ଅଲୋ ତୁ ଏତେକ ଜାଣିପାରୁନାହୁଁ ତୁ ବାନ୍ଧ ଦେଇଥିବା ଖୋସା ଏପରି କପରି ହେଲା ? ଯେଉଁ ପୁରୁଷକୁ ତୁ ତୋ ହୃଦୟ ବକ ଦେଇଛୁ ସେ କଣ ତୋହରି ଭଳି ସରଳ । ତୋ ପାଇଁ କହି କହି ଯେତେବେଳେ ମେ ମୋତେ ଶୁଣିଲା ନାହିଁ, ସେତେବେଳେ ବାଧ ହୋଇ ତା ପାଦ୍‌ରୁ ପଡ଼ ଶୁତଲ (ଶୋଇଲି) । ସେତିକବେଳେ ମୁଣ୍ଡବାଳ ଆଉଳା ହୋଇଗଲା ।

ରାଧା ସହଜେ ଛାଡ଼ିବାର ନୁହେଁ । ଏ ପୁଣି ପ୍ରେମକଥା । ପ୍ରେମରେ ସବୁବେଳେ ସନ୍ଦେହ ଲଗି ରହିଥାଏ । ପୁରୁଷଙ୍କ କଥା ପୃଥକ । ମାତ୍ର ସ୍ତ୍ରୀମାନେ ପ୍ରେମ ବିଷୟରେ ବଡ଼ ସଜାଗ । ଶ୍ରୀକୃଷ୍ଣ ଯଦ ଦୂତିକାଙ୍କ ସହିତ ଆସିଥାନ୍ତେ ତେବେ ରାଧାଙ୍କର ସନ୍ଦେହର ଅବକାଶ ନ ଥାନ୍ତା । କୃଷ୍ଣ ନ ଆସିବା ଯୋଗୁ ତାଙ୍କ ମନରେ ସନ୍ଦେହର ସୂତ୍ରପାତ ହେଲା । ଏଣେ ପୁଣି ଦୂତୀ ସରହ ସୁନ୍ଦରୀ । ବୟସର ଅଧିକ୍ୟ ହେତୁ ତାଙ୍କ ରୂପରେ ମଳନତା ଆସି ଯାଇଥିଲେ ମଧ ଟିକିଏ ତାଙ୍କୁ ସଜାଇ ଦେଲେ ଜଣାପଡ଼େ ନାହିଁ ତାଙ୍କର ବୟସ ପ୍ରକୃତ କେତେ ?

ଅଗୋ ଦୂତୀ ତୁମେ ଯାହା ସବୁ କହିଲ ମାନଲି ଯେ, ମାତ୍ର ତୁମ ଗଳାରେ ତ ରତ୍ନ ମାଳୀ ଅତି ଯତ୍ନରେ ପିନ୍ଧାଇ ଦେଇଥିଲି । ଏବେ ଦେଖୁଛି ସେହି ମାଳୀର ଥୋପମାନ ପିଠି ପାଖକୁ କପରି ଗଲା ? ତାଙ୍କ ପାଦତଳେ ଶୋଇଗଲା ବେଳେ ସେଗୁଡ଼ିକ କଣ ପିଠି ପାଖକୁ ମନକୁ ମନ ପଳେଇଗଲେ ? ଶ୍ରୀରାଧା ଦୂତିକାକୁ ଆକ୍ଷେପ କରି କହିଲେ ।

ଆଲୋ ସେ ଗୁଡ଼ିକ ଆପେ ଅପେ କାହିଁକ ଯାନ୍ତେ ବା । ମୁଁ ଯେତେ-ବେଳେ ତାଙ୍କ ପାଦତଳେ ଶୋଇଗଲି ସେତେବେଳେ ମାଳୀର ଥୋପ ସବୁ ଆଗକୁ ପଡ଼ିଲେ । କାଳେ, ମୋ ଦେହ ଅଉ ବନ୍ଧୁମା ଦେହରେ ବାଧାପାଇ ସେ ଗୁଡ଼ିକ ଭାଙ୍ଗିଯିବ କମ୍ବା ବଙ୍କା ହୋଇଯିବ ଏହି ଭୟରେ ଝୁଂପା ଗୁଡ଼ିକୁ ମୁଁ ପଛକୁ ପକାଇଦେଲି ।

ହଁ ହଁ ସେହିଭଳି କରଥିବୁ, ତା ନ ହେଲେ ସେ ଗୁରୁଙ୍କ ଘରରୁ ଆସି ପିଠିରେ ଘଷିହେଲ କପରି, ଆଚ୍ଛା ତୁମ ପିଠିରେ ଏତେ ଧୂଳି ଲଗିଲା କପରି ? ପିଠିଟି ତ ଧୂଳିରେ ସର ସର ହେଉଛି । ସତେ ଯେପରି ଗଡ଼ି ହୋଇ ଶୋଇ-ଯାଇଥିଲ ଧୂଳି ଉପରେ ।

ଦୂଷା ହାତକୁ ହଲାଇ କହିଲେ, ମୁଁ ଦେଖୁଛି ତୋର ତ ଟିକିଏ ହେଲେ ଜାଣିବା ଶକ୍ତି ନାହିଁ । ଆରେ ସୋଧ ! ତୁମ ପାଇଁ ବହୁତ କହି ଯେତେବେଳେ ତାଙ୍କ ଗୋଡ଼ଧରି ପଡ଼ିଗଲି, ସେତେବେଳେ ସେ ନାହିଁ ନାହିଁ କରି ଗୋଡ଼ ଛାଡି ଦେଲେ । ଫଳରେ ମୁଁ ଗଡ଼ିଗଲି ଭୂମିନଶାୟୀ ହୋଇ ସେତିକି ବେଳେ ପିଠିରେ ଧୂଳି ଲଗିଥିବ ।

ହେଉ ହେଉ ପିଠିରେ ତ ଧୂଳି ଲଗିଲା ଲଗିଲା, ମାତ୍ର ତୁମ ଦେହ ନାଖ ଦନ୍ତରେ କ୍ଷତ କଳ ଭଳି ଏପରି ସବୁ ଚିହ୍ନ କପରି ହୋଇଛି ?

ଦୂଷିକା କହିଲେ, କଣ ଆଉ ତୋତେ କହିବଟି ସାଧା ! ତୋ ପାଇଁ କଣ ମୁଁ ଅଳପ କଷ୍ଟ କରଛି । ତୁ ଯଦି ସେତେବେଳେ ସେଠାରେ ଥାନ୍ତୁ ତେବେ ଦେଖିଥାନ୍ତୁ ତୋ ପାଇଁ ମୁଁ କ ଅବସ୍ଥା ହେଉଥିଲି । ମୁଁ ତୋ କଥାକୁ ତା ଆଗରେ କହି ଯଦି ସେ ନ ଶୁଣିଲ ତେବେ ଖାଲି ସାଧାରଣ ଲୋକଙ୍କ ଭଳି ଫେରିଲେଇ ଆସିଥାନ୍ତି ତେବେ ତୁ କଣ କହିଥାନ୍ତୁ ? ସମସ୍ତେ ଜାଣନ୍ତି ମୁଁ ଯେଉଁ କାମରେ ହାତ ଦିଏ ସେ କାମ ନିଷ୍ଟୟ ହୁଏ । ବୃନ୍ଦାବନୁ ଜେମା ତୁ । ତୋର ଗୋଟାଏ କାମ ପାଇଁ ଯଦି ତୁ ବରଗିଲୁ ତେବେ କାମଟିକ ଠିକ୍ କରି ନ ଆସିଲେ, ତୁ କଣ କହିଥାନ୍ତୁ, ଆଉ ଲୋକେ ବି କଣ କହିଥାନ୍ତେ ମୋତେ ? ମୁଁ ଯେତେବେଳେ ତା ପାଦତଳେ ତୋ ପାଖକୁ ଆସିବାକୁ ମିନତି କରି ଶୋଇଲି, ସେତେବେଳେ ନ ଯାଇଂ ନ ଯାଇଂ କହି ମୋତେ ପେଲି ଦେଲେ । ମୁଁ ପଡ଼ିଗଲି କଣ୍ଟା ବୁଦାରେ । କଣ୍ଟା ଦେହରେ ବାଜି ମୋ ଦେହ କ୍ଷତ ବିକ୍ଷତ ହୋଇଗଲା ।

ହେଲା ତୋ କଥା ସବୁ ଠିକ୍ । ମାତ୍ର ତୁ ତ ଗଲବେଳେ ତୋତେ ମୁଁ ମୋ ପିନ୍ଧା ଶାଢ଼ୀଟି ପିନ୍ଧାଇ ଦେଇଥିଲି, ଏବେ ଦେଖୁଛି ତା ବଦଳରେ ତୁ

ଗୋଟିଏ ପୁରୁଷ ଲୁଗା ପିନ୍ଧି ଆସିଛୁ ? ତାହା କଣ କଣ୍ଠାବୁଦାରେ ପଡ଼ିଗଲା ବେଳେ ଦେହରେ ଗୁଡ଼ାଇ ହୋଇଗଲା, ନା ତୋ ବିକଳ ସହି ନ ପାରି କୃଷ୍ଣ ତାଙ୍କ ଲୁଗାଟି ତୋତେ ପିନ୍ଧାଇ ଦେଲେ ?

ହେଉ କୃଷ୍ଣ ଆସିଲେ ତାଙ୍କୁ ପଚାରିବୁ ଏ ଲୁଗାଟି କପରି ପିନ୍ଧିଲୁ ? ତୋ ପାଇଁ ବହୁ ଅନୁନୟ କଲାପରେ ସେ ଯେତେବେଳେ ଆସିବା ପାଇଁ ରାଜି ହେଲେ, ସେତେବେଳେ କହିଲି, ତୁମେ ତା ପାଖକୁ ଯିବ ବୋଲି ସମ୍ମତ ହୋଇଛ, ଏଥର ସଙ୍କେତ କିଛି ଦିଅ ଯାହା ଦେଖି ରାଧିକା ବିଶ୍ୱାସ ଯିବ ହଁ ଦୂତି ମୋ ପାଇଁ ଉପଯୁକ୍ତ ବ୍ୟବସ୍ଥା କରି ଆସିଛି । ଏହା କହିବାରୁ କୃଷ୍ଣ କହିଲେ ମୋ ପାଖରେ ତ ଆଉ କୌଣସି ସଙ୍କେତ ଦେବାପାଇଁ ଜିନିଷ ନାହିଁ । ଯଦି କହିବ ତୁମ ଲୁଗାଟିକୁ ମୁଁ ପିନ୍ଧିବି ଆଉ ମୋ ଲୁଗାଟିକୁ ରାଧାର ସଙ୍କେତ ପାଇଁ ଦେବି । ତାଙ୍କ କଥାରେ ଏକ ମତ ହେବାରୁ ସେ ମୋ ଲୁଗାକୁ ବେଢ଼େଇ ହୋଇ ତାଙ୍କ ଲୁଗାଟି ଦେଇଛନ୍ତି । କେବଳ ତୁ ପରତେ ଯିବୁ ବୋଲି ଏତିକ କଲି । ଆଉ ତୁ ମୋତେ ଥରକୁ ଥର ସନ୍ଦେହ ଲୋକ ପଚାରିଲା ଭଳି ଆଉ ସାଉ ପଚାରି ଚାଲିଛୁ । ଟିକିଏ କିଛି ବେଭଙ୍ଗ ଦେଖିଲେ ଯଦି ସନ୍ଦେହ କରିବୁ ତେବେ ହେବ କପରି ?

ହସିଲେ ରାଧା । ହସି ହସି ସେ କୁଣ୍ଢାଇ ପକାଇଲେ ଦୂତିକାଙ୍କୁ । ଛୋଟ ପିଲା ଭଳି ଦୂତିକାଙ୍କ ଛାତିରେ ମୁହଁ ଗୁଞ୍ଜି ରାଧା କହିଲେ, ଦୂତି ଗୋ ! କୃଷ୍ଣ ପାଇଁ ଏ ମନ ଯାହା ହେଉଛି ତାହା କହିବାକୁ ଭାଷା ପାଉ ନାହିଁ । ତୁମେ ମୋ ପାଇଁ ଯେତେ କଷ୍ଟ ସହିଲ, ମୁଁ ବା ତୁମକୁ କଣ ଦେଇ ତୋଷିବି । ସତରେ ପୁରୁଷଙ୍କୁ କଣ ବିଶ୍ୱାସ ଅଛି । ପୁରୁଷ ତ ପୁରୁଷ ପୁଣି କୃଷ୍ଣ ଭଳି ପୁରୁଷ ! ଷୋଳ-ସହସ୍ର ଗୋପାଙ୍ଗନା ଯାହାଙ୍କ ପାଇଁ ପାଗଳ ତାଙ୍କୁ ରାଧା ପାଇବା କଣ ସହଜ କଥା । ମୁଁ ଆଜି ଜାଣିଲି କେବଳ ତୁମରି ପାଇଁ କୃଷ୍ଣ ମୋ ପାଖକୁ ଆସିବେ ।

ବନ୍ଧୁରଙ୍କ ଆଗରେ ଈଶ୍ୱର କହି ଚାଲିଛି କୃଷ୍ଣ— ଦୂତିକା— ରାଧିକାଙ୍କ କଥା । ଆନନ୍ଦ ବିହ୍ୱଳ ହୋଇ ସବୁ ଶୁଣୁଥାନ୍ତି ସେ ।, ରାଧା କୃଷ୍ଣଙ୍କ ପ୍ରେମ କାହାଣୀ କାହାକୁ ବା ଆନନ୍ଦ ନ ଦେବ ? ଈଶ୍ୱର ପୁଣି ଆରମ୍ଭ କଲା ତାର କଥା ।

ଦୁର୍ଗକା ନବମାସ ପରେ ମୋତେ ପ୍ରସବ କଲେ । ମୁଁ ସେହି ସରହି ହ୍ନଦଶର ପୁତ୍ର । ମୋର ପିତା ସ୍ୱୟଂ ଶ୍ରୀକୃଷ୍ଣ । ତା ପରେ ମୋତେ ନେଇ ସେ ଶ୍ରୀକୃଷ୍ଣଙ୍କ ପାଖରେ ଗୁଡ଼ ଦେଇ କହିଲେ, ସେଦିନ ତୁମେ ରାଧା ବୋଲି ମୋ ସହିତ ଯେଉଁ ପ୍ରୀତି କରିଥିଲ ତାହାର ଫଳ ଏହି ପିଲଟି । ଏହା ତୁମର ପୁତ୍ର । ଆଜଠାରୁ ଏ ତୁମର ସେବାରେ ନିଯୁକ୍ତ ହେଉ ।

ପିତା ଶ୍ରୀକୃଷ୍ଣ ସେଦିନ ମୋର ନାମ ଦେଲେ ଖଲ୍ଲିକାର । ବ୍ରହ୍ମା ତାଙ୍କୁ ଦେଇଥିବା ସେହି ଲକ୍ଷଣା ଅସ୍ତ୍ରଟି ମୋ ହାତରେ ଦେଇ କହିଲେ, ତୁ ଗୋଟିଏ କାମ କର । ଏହି କଦମ୍ବ ବୃକ୍ଷ ମୂଳରୁ ରାଧିକାଙ୍କ ପଲଙ୍କ ତଳ ପର୍ଯ୍ୟନ୍ତ ଜୁଟିଏ ପଥ ତୁ ଗୋଟିଏ ବମ୍ବିର ( ବିଲ ) ମାଟି ଫୁଟାଇ ଖୋଳିନେବୁ । ମୁଁ ପିତା ଶ୍ରୀକୃଷ୍ଣଙ୍କ ଆଦେଶରେ ଜୁଟିଏ ହେବ ଗୋଟିଏ ବମ୍ବିର ଅଠର ଦିନ ଲାଗି କଦମ୍ବ ମୂଳଠାରୁ ରାଧିକାଙ୍କ ପଲଙ୍କ ତଳ ପର୍ଯ୍ୟନ୍ତ ଖୋଳି ନେଲି । ସେହି ବମ୍ବିର ତାଳେକ ଉର୍ଦ୍ଧ୍ୱ ବହାର ଭିନ ତାଳ ପର୍ଯ୍ୟନ୍ତ । ରାଧା ସେହି ବମ୍ବିର ମୁହଁରେ ପଥର ଖଣ୍ଡେ ଦେଇ ବମ୍ବିର ମୁହଁକୁ ଲୁଚାଇ ଦେଇଥାଏ । ରାତିରେ ତାର ସ୍ୱାମୀ ଶୋଇଗଲା ପରେ ସେହି ବମ୍ବିର ମଧ୍ୟ ଦେଇ କଦମ୍ବ ମୂଳକୁ ଚାଲିଯାନ୍ତି । ରାତି ପାହିବା ପୂର୍ବରୁ ପୁଣି ସେ ଫେରି ଆସନ୍ତି ସେହି ବମ୍ବିର ଦେଇ ନିଜ ଘରକୁ ।

ବିଦୁର ବିସ୍ମିତ ହେଲେ ଠାକୁର ଖଲ୍ଲିକାରର ଉକ୍ତି ଶୁଣି । ତା ପରେ ମନେ ମନେ ସେ ଭାବିଲେ ଏ ହେଉଛି ଉପଯୁକ୍ତ ଲୋକ ପାଣ୍ଡବମାନଙ୍କୁ ବଞ୍ଚାଇବା ପାଇଁ ।

ବିଦୁର ଦୁଇଟି ପଦର ଅଧିକାରୀ । ଗୋଟିଏ ଭଣ୍ଡାର ରକ୍ଷକ— ଅପରଟି ନଗର ରକ୍ଷକ । ସଙ୍ଗେ ସଙ୍ଗେ ଯଥେଷ୍ଟ ଧନ 'ସଂପତ୍ତି ଦେଇ ଖଲ୍ଲିକାରକୁ କହିଲେ ଆଜଠାରୁ ତୁ ଆଉ ବେଶ କରିବୁ ନାହିଁ । ତୋର ଯାହା ଆବଶ୍ୟକ ତାହା ମୋ ଠାରୁ ମାଗିନେବୁ ।

ଏତିକ ବେଳେ ପୂର୍ବାକାଶ ଲାଲ ହୋଇ ଆସିଲା । ପ୍ରଭାତର ପୂର୍ବାଭାସ ଜାଣି ଠାକୁର ତରତରରେ ହୋଇ ଚାଲିଗଲା ପୁଣି କାଲିକୁ ଦର୍ଶନ କରିବ ବୋଲି । ବିଦୁର ଏକ ଦୃଷ୍ଟିରେ ଚାହିଁ ରହିଥିଲେ ତାର ଗତ ପଥକୁ ।

# ଯୁଧିଷ୍ଠି ହରଣ

ପାଣ୍ଡବମାନଙ୍କ ବନବାସ ସାତବର୍ଷ ହୋଇଗଲା । ଆହୁରି ବାକି ଅଛି ପାଞ୍ଚବର୍ଷ ବନବାସ ସରିବାକୁ । ପୁଣି ଏହି ପାଞ୍ଚବର୍ଷରୁ ଚାରିବର୍ଷ ବନବାସ— ଗୋଟିଏ ବର୍ଷ ଅଜ୍ଞାତ ବାସ । ଏବଳି ବେଳକୁ ପାଣ୍ଡବମାନଙ୍କର ହଂସା ଉଡ଼ି ଯାଉଛି ।

ବର୍ଷା ଋତୁ । ଆଷାଢ଼ ମାସରେ ମେଘ ଦୁରୁଦୁରୁ ହୋଇ ବହୁଛି ( ବର୍ଷୁଛି ) । ଯେତେହେଲେ ରାଜା ପିଲାମାନେ । କେତେ ଗଛମୂଳେ ପର୍ବତ କନ୍ଦରରେ ମାଙ୍କଡ଼ ଭାଲୁଙ୍କ ଭଳି ଦିନ କଟାଇବେ ।

ସାରା ଆକାଶକୁ କଳାମେଘ ଢାଙ୍କି ରଖିଛି । ସମ୍ଭବତ ଲଗାଣ ବର୍ଷା ହେବ ।

ଚାରିଭାଇ ଏବଂ ପତ୍ନୀ ଦ୍ରୌପଦୀଙ୍କ ସହିତ ଯୁଧିଷ୍ଠି ଦେବ ବସିଥାନ୍ତି ମେଘ ଢଙ୍କା ଆକାଶ ତଳେ, ଧାତୁଗିରି ପର୍ବତ ଉପରେ ।

ଯୁଧିଷ୍ଠି କହିଲେ ବର୍ଷା ଚାରିମାସ ଏଠାରେ ରହିଯିବା ।

ବଡ଼ଭାଇ ଯେତେବେଳେ କହୁଛନ୍ତି ସେତେବେଳେ ଦ୍ୱିମତ ହେଉଛି କିଏ ? ବଡ଼ ଭାଇଙ୍କ ମୁହଁରୁ କଥା ସରୁ ନ ସରୁଣୁ ଚାରିଭାଇ ଉଠି ଧାଇଁଲେ ମଢ଼ିଆ ନିର୍ମାଣ କରିବାକୁ । ଭୀମ ତାଳପତ୍ର ଭାଙ୍ଗି ଆଣି ଗଦା କରିଦେଲା, ତିନିଭାଇ ଲାଗି ପଡ଼ିଲେ 'ଛ' ଟି ମଢ଼ିଆ ( ପର୍ଣ୍ଣ କୁଟୀର ) ନିର୍ମାଣ କରିବା ପାଇଁ ।

ଖୁବ୍ ଅଳ୍ପ ସମୟରେ ସୁସଜ୍ଜ ମଢ଼ିଆ ଛ ଟି ନିର୍ମାଣ ହୋଇଗଲା ।

ମଢ଼ିଆଟିମାନ ନିର୍ମାଣ କରି ଟିକିଏ ତା ତଳେ ବିଶ୍ରାମ ନେଇଛନ୍ତି କି ନାହିଁ ଗୋଟିଏ ରଥ ଶୂନ୍ୟରେ ଘୁରିଘୁରି ଅବତରଣ କରୁଥିବାର ପାଣ୍ଡବମାନେ ଦେଖିଲେ । ରଥର ଆକୃତିରୁ ଦେବ ରଥ ଭଳି ଦେଖା ଯାଉଥାଏ । ଯାହାହେଉ

ପାଣ୍ଡବମାନେ ସତର୍କତାର ସହିତ ଲକ୍ଷ୍ୟ କଲେ ରଥ ତଥା ଆରୋହୀଙ୍କ ଗତି-ବିଧିକୁ ।

ରଥ ଅବତରଣ କଲା ପରେ ଜଣାପଡ଼ିଲା ତାହା ଇନ୍ଦ୍ରଙ୍କ ପୁଷ୍ପେକ (ପୁଷ୍ପକ) ବିମାନ । ରଥରୁ ଓହ୍ଲାଇ ମାତଲି ପାଣ୍ଡବଙ୍କ ପାଖକୁ ସିଧା ଚାଲିଲେ ।

ମାତଲି ପ୍ରଣିପାତ୍ୟ ହେଲେ ଯୁଧିଷ୍ଠିର ଦେବଙ୍କୁ । ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଭାଇମାନେ ସେଠାରେ ଉପସ୍ଥିତ ହେଲେ । ମାତଲି ଯୁଧିଷ୍ଠିର ଦେବଙ୍କୁ ଇନ୍ଦ୍ରଙ୍କ ବାର୍ତ୍ତା ଦେଲେ ।

ଇନ୍ଦ୍ରଙ୍କ ପଡ଼ିଛି ମହା ବିପତ୍ତି । ନିବାତ କବଚର ପୁତ୍ର ହିରଣ୍ୟକବଚ ସ୍ୱର୍ଗ ଆକ୍ରମଣ କରିବାକୁ ସ୍ଥିର କରିଛି । ରାକ୍ଷାସରାଜ ହିରଣ୍ୟକବଚ ମହାପ୍ରତାପୀ । କେବଳ ଅର୍ଜୁନ ବ୍ୟତୀତ ତାଙ୍କୁ ରଣରେ ପରାଜିତ କରିବା କାହାରି ପକ୍ଷେ ସମ୍ଭବ ନୁହେଁ । ତେଣୁ ମଘବା ଅର୍ଜୁନଙ୍କୁ ନେଇ ଆସିବାକୁ ମାତଲିଙ୍କୁ ପୁଷ୍ପକ ବିମାନ ଦେଇ ପଠାଇଛନ୍ତି । ଅର୍ଜୁନ ପାଖରେ ଥିଲେ ଅମରେ ନିଶ୍ଚିନ୍ତ । ତା ନହେଲେ କେତେବେଳେ ରାକ୍ଷସ ସ୍ୱର୍ଗ ଆକ୍ରମଣ କରି ଦେବତାଙ୍କୁ ଲଣ୍ଡଭଣ୍ଡ କରି ପକାଇବ ।

ମାତଲିଠାରୁ ଇନ୍ଦ୍ରଙ୍କ ବାର୍ତ୍ତା ପାଇଲା ମାତ୍ରେ ଯୁଧିଷ୍ଠିର ସଙ୍ଗେ ସଙ୍ଗେ ଅର୍ଜୁନଙ୍କୁ କହିଲେ ମାତଲି ସହିତ ସ୍ୱର୍ଗ ଯିବାପାଇଁ । ଅର୍ଜୁନ ଦ୍ୱାରା ଯଦି ସ୍ୱର୍ଗ ରକ୍ଷା ହୁଏ ତେବେ ଏହା ଏକ ମହାନ୍ ଗୌରବ ।

ଭାଇଙ୍କ ମୁଖରୁ ଯିବାପାଇଁ ଆଦେଶ ଶୁଣିବା ମାତ୍ରେ ଅର୍ଜୁନ ପ୍ରସ୍ତୁତ ହୋଇ ପୁଷ୍ପକ ରଥରେ ଆରୋହଣ କଲେ । ମାତଲି ରଥ ଚଳାଇ ନିମିଷକେ ସ୍ୱର୍ଗ ଯାତ୍ରା କଲେ ।

ସ୍ୱର୍ଗରେ ପହଞ୍ଚି ରଥରୁ ଓହ୍ଲାଇ ଅର୍ଜୁନ ଇନ୍ଦ୍ରଙ୍କ ପାଖକୁ ଚାଲିଲେ । ବୃହସ୍ପତି ଆଦିଙ୍କ ସହିତ ଇନ୍ଦ୍ର ବସିଛନ୍ତି ମନ୍ତ୍ରଣା କକ୍ଷରେ । ସମସ୍ତଙ୍କର ପ୍ରଧାନ ଚିନ୍ତା ହିରଣ୍ୟକବଚ ହାତରୁ ସ୍ୱର୍ଗ କିପରି ରକ୍ଷା ହେବ । ଏହି ସମୟରେ ଅର୍ଜୁନ ମନ୍ତ୍ରଣା କକ୍ଷରେ ପ୍ରବେଶ କଲେ ।

ଅର୍ଜୁନଙ୍କୁ ଦେଖୁଦେଖୁ ଇନ୍ଦ୍ର ଆସ୍ଥାନ ତେଜ୍ୟା କରି ଉଠିଲେ ।

ବୃହସ୍ପତି କହିଲେ, "ଅର୍ଜୁନ ତ ତୁମ୍ଭର ପୁତ୍ର । ତାଙ୍କୁ ଦେଖି ଆସ୍ଥାନ ତ୍ୟାଗ କରି ଉଠୁଛ କାହିଁକି ।"

ଇନ୍ଦ୍ର କହିଲେ, ସଂସାରରେ ଜିତା ପୁତ୍ର, ଶିଷ୍ୟହନ୍ତା, ଗୁଣବନ୍ତ ସାନଭ୍ରାତ, ବିଚକ୍ଷଣ ଜାମାତା, କୁଳଶ୍ରେଷ୍ଠ ବିପ୍ରଦେବତାଙ୍କ ଆଗମନ ଦେଖି ଆସ୍ଥାନ ତ୍ୟାଗ କରିବା ଉଚିତ୍ । ତେଣୁ କୁଳଉଦ୍ଧାରଣ ଗୁଣବନ୍ତ ଏହିପରି ହିତକାରି ପୁତ୍ରକୁ ଦେଖି ଆସ୍ଥାନରୁ ଉଠିବା ମୋର କର୍ତ୍ତବ୍ୟ ।

ବାସବଙ୍କ ପାଦତଳେ ଅର୍ଜୁନ ପ୍ରଣାମ କଲେ । ଆନନ୍ଦରେ ବାସବ ପୁତ୍ରକୁ ତଳୁ ଉଠାଇ ବକ୍ଷରେ ଜଡ଼ାଇ ଧରିଲେ । ମୁହୂର୍ତ୍ତକ ପାଇଁ ଗୋଟିଏ ଭୟସଂକୁଳ ବକ୍ଷ ସହିତ ଆଉ ଗୋଟିଏ ନିର୍ଭୟ ବକ୍ଷର ମିଳନ ହେଲା । ଜଣେ ପିତା ଅନ୍ୟଟି ପୁତ୍ର ।

କ୍ଷଣକ ପୂର୍ବରୁ ଯେଉଁ ଉଦ୍‌ବିଗ୍ନତାରେ ଇନ୍ଦ୍ରଙ୍କ ହୃଦୟ ଆନ୍ଦୋଳିତ ହେଉଥିଲା, ତାହାର ପରିସମାପ୍ତି ହେଲା ଅର୍ଜୁନଙ୍କୁ ପାଖରେ ପାଇ । ସେ ଅର୍ଜୁନଙ୍କୁ ପାଖରେ ବସାଇ କହିଲେ ମୁଁ ଗୁପ୍ତଚରଠାରୁ ଶୁଣିବାକୁ ପାଇଲି ହିରଣ୍ୟକପଟ କାଲି ସ୍ୱର୍ଗ ଆକ୍ରମଣ କରିବ । ଏଥିପାଇଁ ତୋତେ ଡକାଇ ପଠାଇଲି । ହିରଣ୍ୟ-କପଟ ଯେଉଁଭଳି ବଳିଷ୍ଠ ସେହିଭଳି ଭୟଙ୍କର । ତାହାଠାରୁ ସ୍ୱର୍ଗ କିପରି ରକ୍ଷା ହେବ ତାହା ଏକ ମସ୍ତ ଚିନ୍ତା । ତୁ ସାହାଯ୍ୟ ନ କଲେ ଅମରେ ଅସ୍ତବ୍ୟସ୍ତ ହୋଇଯିବେ ।

ଅର୍ଜୁନ ଇନ୍ଦ୍ରଙ୍କୁ ସାହସ ଦେଇ କହିଲେ, ଏହି ସାମାନ୍ୟ ହିରଣ୍ୟକପଟ ପାଇଁ ଆପଣ ଏତେ ଚିନ୍ତିତ କାହିଁକି । ସେ ଯଦି ସ୍ୱର୍ଗ ଆକ୍ରମଣ କରେ ତେବେ ପ୍ରାଣନେଇ କେବେ ଫେରିଯିବ ନାହିଁ ।

ଆଶ୍ୱସ୍ତ ହେଲେ ଇନ୍ଦ୍ର ତଥା ଦେବତାମାନେ ଅର୍ଜୁନର ଭରଷା ପାଇ ।

ରତ୍ନପୁରୀ ( ସ୍ୱର୍ଗ ) ଯାଇ ପ୍ରସ୍ତୁତ ହେଲି । ଅନ୍ଧକାର ଦୂରୀଭୂତ କରି ସୂର୍ଯ୍ୟ ଆକାଶ ବକ୍ଷରେ ଉଦୟ ହେଉ ହେଉ ହିରଣ୍ୟକଶିପୁ ରାଜ୍ୟରେ ସାଜ ସାଜ ଧ୍ୱନି ଶୁଣାଗଲା । ସଜହେଲେ ସୈନ୍ୟ ସେନାପତି, ରଥୀ, ପଦାତି । ସଜ ହେବାକୁ ଲଗିଲେ ଅଶ୍ୱ, ଗଜ ।

ରାକ୍ଷାସରାଜ ହିରଣ୍ୟକଶିପୁ ମହାମନ୍ତ୍ରୀ ଶୁକଙ୍କୁ ସଜହୋଇ ସ୍ୱର୍ଗ ଯିବାପାଇଁ କହିଲେ ।

ଶୁକ କହିଲେ ଆଉ ବର୍ତ୍ତମାନ ସ୍ୱର୍ଗ ଆକ୍ରମଣ କରି କିଛି ଲଭ ନାହିଁ । ସ୍ୱର୍ଗ ରାଜ୍ୟ ବର୍ତ୍ତମାନ ନିର୍ଭୟ । ଯେଉଁ ଅର୍ଜୁନ ହାତରେ ତୋର ପିତା ନିବାତ କବଚ ବଧ ହୋଇଥିଲି ସେ ବର୍ତ୍ତମାନ ସ୍ୱର୍ଗରେ । ତେଣୁ ମିଛଟାରେ ସ୍ୱର୍ଗ ଆକ୍ରମଣ କରି ଲଭ କଣ । ବରଂ ଏହାଦ୍ୱାରା ଅର୍ଜୁନ ହାତରୁ ପରାଭବ ପାଇ ପରାସ୍ତ ହୋଇ ଫେରି ଆସିବା ସାର ହେବ ।

ଅର୍ଜୁନର ନାମ ଶୁଣି ହିରଣ୍ୟକଶିପୁ ବିସ୍ମିତ ହୋଇ କହିଲି ସେ କିଏ ? ତାର କଣ ଆବଶ୍ୟକ ଅଛି ସ୍ୱର୍ଗର ଇନ୍ଦ୍ରଙ୍କୁ ରକ୍ଷାକରିବା ?

ଶୁକ କହିଲେ, ଭୋଜରାଜର କନ୍ୟା କୁନ୍ତୀ । ବିଦ୍ୟା ପରୀକ୍ଷା ନିମିତ୍ତ ଋଷିଦତ୍ତ ମାଳା ଧରି ସେ ଇନ୍ଦ୍ରଙ୍କୁ ଲକ୍ଷ୍ୟ କଲେ । ମାଳାର ପ୍ରଭାବରେ ସଙ୍ଗେ ସଙ୍ଗେ ଇନ୍ଦ୍ର ଉପଗତ ହେଲେ କୁନ୍ତୀଙ୍କ ପାଖରେ । ତାଙ୍କର ବୀର୍ଯ୍ୟରୁ କୁନ୍ତୀଙ୍କ ଗର୍ଭରୁ ଅର୍ଜୁନର ଜନ୍ମ । ଅର୍ଜୁନ ପୂର୍ବରୁ କୁନ୍ତୀଙ୍କ ଗର୍ଭରୁ ଯୁଧିଷ୍ଠିର ଏବଂ ଭୀମଙ୍କର ଜନ୍ମ ହୋଇଥିଲି । ଅର୍ଜୁନ ଧନୁର୍ଦ୍ଧର ଚୂଡ଼ାମଣି । ସେଥିପାଇଁ ତ୍ରୈଲୋକ୍ୟରେ ତାକୁ ଧନୁର୍ଜୟ ବୋଲି କୁହନ୍ତି । ପାଣ୍ଡୁଙ୍କ ସ୍ତ୍ରୀ କୁନ୍ତୀଙ୍କ ଗର୍ଭରୁ ଜନ୍ମ ହୋଇଥିବାରୁ ସେମାନେ ପାଞ୍ଚ ଭାଇଙ୍କୁ ପାଣ୍ଡବ କୁହାଯାଏ ।

ଏକଦା ତୋର ପିତା ନିବାତକବଚ ଆକାଶକୁ ଧାଡ଼ି ଦେଲି । ଦେବାସୁର ଦୁଇଭାଇ । ଜଣେ ସ୍ୱର୍ଗସୁଖ ଭୋଗ କଲାବେଳେ ଆଉଜଣେ ଏହି

ମରତ୍ଜଗତର ଜନ୍ମ ମରଣ ସୀମା ମଧ୍ୟରେ ଆବଦ୍ଧ ରହିବ କାହିଁକି ? ତେଣୁ ଯୁଗେ ଯୁଗେ ଦେବତାଙ୍କ ସ୍ୱର୍ଗରୁ ତଡ଼ି ନିଜେ ସ୍ୱର୍ଗସୁଖ ପାଇବା ପାଇଁ ରାକ୍ଷାସ ସ୍ୱର୍ଗ ଆକ୍ରମଣ କରଥାନ୍ତି । କିନ୍ତୁ ରାକ୍ଷାସଙ୍କ ଭାଗ୍ୟ ଯେତେବେଳେ ଅନୁକୂଳ ଅବସ୍ଥା ନ ଥିଲେ ପରାଜୟ ସାର ହୁଏ ।

ତୋର ପିତା ଯେତେବେଳେ ସ୍ୱର୍ଗ ଆକ୍ରମଣ କଲ ସେତେବେଳେ ମୁଁ ତାଙ୍କୁ ବାରଣ କଲି । ଜାଣିଥିଲି ଅର୍ଜୁନ ଇନ୍ଦ୍ରଙ୍କୁ ରକ୍ଷା କରିବା ପାଇଁ ସ୍ୱର୍ଗରେ ଅବସ୍ଥାନ କରିଛି । ଏ ସମୟରେ ସ୍ୱର୍ଗ ଆକ୍ରମଣ କଲେ ପରାଜୟ ହିଁ ସାର ହେବ । ମାତ୍ର ସେ ମୋ କଥା ମାନିଲ ନାହିଁ । ଫଳରେ ମୃତ୍ୟୁ ବରଣ କଲ । ତୋର ଆକ୍ରମଣ ସମ୍ବାଦ ପାଇ ଗତକାଲି ଇନ୍ଦ୍ର ଅର୍ଜୁନଙ୍କୁ ମର୍ତ୍ତ୍ୟ ନେଇ ଯାଇଛି । ଏ ସମୟରେ ସ୍ୱର୍ଗ ଆକ୍ରମଣ କର ପିତା ଅବସ୍ଥା ଭୋଗିବା ସାର ହେବ ।

ଯୁଦ୍ଧାକାଂକ୍ଷୀ ହିରଣ୍ୟକପଟର ମୁଖ ଶୁକ୍ରଙ୍କ କଥାଶୁଣି ମଳିନ ପଡ଼ିଗଲ । ଗୋଟାଏ ବିରାଟ ଆୟୋଜନ ନିମିତ୍ତକେ ପଣ୍ଡ ହୋଇଗଲ । ସେ ବିରସ ମନରେ କହିଲ ତେବେ ମୁଁ କିପରି ପୁରନ୍ଦରକୁ ଜିଣିମି ମୋତେ ସେହି ମନ୍ତ୍ରଣା ଦିଅ ।

ଶୁକ୍ର ମନ୍ତ୍ରୀ କହିଲେ, ତୋ ପିତାକୁ ଇନ୍ଦ୍ରଙ୍କ ପୁତ୍ର ବଧ କଲ । ତାଙ୍କୁ ହିଁ ବଧ କରିବା ଉଚିତ୍ । ମାତ୍ର ସ୍ୱର୍ଗ ଯାଇ ତାଙ୍କୁ ବଧକରି ହେବ ନାହିଁ ।

ମହାମନ୍ତ୍ରୀ ଶୁକ୍ର ଟିକିଏ ଚିନ୍ତା କଲେ—

ହଁ ବର୍ତ୍ତମାନ ଉପଯୁକ୍ତ ବେଳ । ଅର୍ଜୁନ ସ୍ୱର୍ଗରେ ! ଭାଗ୍ୟବର ବନର ଧାତୁଗିରି ପର୍ବତରେ ଅଛନ୍ତି ଅର୍ଜୁନର ଅନ୍ୟ ଚାରିଭାଇ । ଏତିକ ବେଳେ ଯଦି ସେମାନଙ୍କୁ କିମ୍ବା ସେମାନଙ୍କ ମଧ୍ୟରୁ ଯୁଧିଷ୍ଠିରଙ୍କୁ ଏଠାକୁ ଧରି ଆଣି ହୁଅନ୍ତା ତେବେ ନିଶ୍ଚେ ଅର୍ଜୁନଙ୍କୁ ଜିଣି ହୁଅନ୍ତା । ଏ ସମୟକୁ ଛାଡ଼ିଦେଲେ ଆଉ ସେପରି ସୁସମୟ ଆସିବ ନାହିଁ ।

ଶୁକ୍ର ଧର୍ମ ଯୁଧିଷ୍ଠିରଙ୍କ ବିଷୟ ସଂକ୍ଷେପରେ ଯେତିକ କହିଲେ, ସେତିକ ଶୁଣି ରାକ୍ଷସ ସ୍ଥିର କରିନେଲ କିପରି ତାଙ୍କୁ ଏଠାକୁ ଆଣିହେବ ।

କାମରୂପୀ ଅସୁର । ଆଖି ପିଛୁଳାକେ ବେଶ ବଦଳାଇ ଅନ୍ୟ ବେଶ ଧରିପାରେ । ଯୁଧିଷ୍ଠିରଙ୍କ ଭଳି ସରଳମନା ଲୋକକୁ ଭୁଲାଇ ଆଣିବା ମୋଟେ କଷ୍ଟକର ନୁହେଁ ।

ସଙ୍ଗେ ସଙ୍ଗେ ସେ ଏକ ଛଦ୍ମ ତପୀ ବେଶ ଧାରଣ କଲା । ମଥାରେ ଲମ୍ବା ଲମ୍ବା ଜଟା ଲମ୍ବାଇ ତମ୍ବାର ଚକ୍ରାକାର ଫଣି ଖଞ୍ଜିଲା । ହାତରେ ବାନ୍ଧିଲା ରସ ବେଣୀ । ଦେହରେ ବିଲେପନ କଲା ଭସ୍ମ । ସରି ସରି କରି ରୁଦ୍ରାକ୍ଷ ଏବଂ ତୁଳସୀର ମାଳ କଣ୍ଠରେ ଲମ୍ବାଇ ଦେଲା । ବକ୍ଷ ସ୍ଥଳରେ ଝୁଲାଇଲା ସ୍ଫଟିକ ମଣ୍ଡିତ ମାଳ । ଲଜ୍ଜା ନିବାରଣ ପାଇଁ ପ୍ରବନ୍ଧ କାଛେଟି ଭିଡ଼ିଦେଲା । ହାତରେ ଧାରଣ କଲା ଜପାମାଳ । ପ୍ରବନ୍ଧ କାଛେଟି ଉପରେ ପଶୁଚର୍ମ ପରିହରଣ କଲା । ଭୁଜରେ ବାନ୍ଧିଲା କେୟୁର କଙ୍କଣ । ପୁଣି କଣ ଭାବି ବକ୍ଷରେ ଲମ୍ବାଇଦେଲା ଶରିକୁଟି ।

ଏଭଳି ଏକ ସଫଳ ତାପସୀ ବେଶୀ ରାକ୍ଷସକୁ ନିଜେ ଶୁକ୍ର ବି ଚିହ୍ନି ପାରିଲେ ନାହିଁ ।

ପ୍ରପଞ୍ଚ ମାୟା ତପସ୍ୱୀ ନିମିଷକେ ମଧ୍ୟରେ ପ୍ରବେଶ ହେଲା ଧାତୁଗିରି ଉପରେ । ଯେଉଁଠାରେ ଯୁଧିଷ୍ଠିର ଦେବଙ୍କ ମଠିଆ ଠିକ୍ ତାହାର ଆଗରେ ମୃଗଛାଲ ଖଣ୍ଡେ ପକାଇ ପଦ୍ମାସନରେ ବସିପଡ଼ିଲା । ଯୋଗୀଙ୍କ ଭଳି ଆଖି ଦୁଇଟି ବୁଜି ସେ ଯେଉଁପରି ବସିଥାଏ ତାକୁ ଦେଖିଲେ ମନେହେବ ସତେ ଯେପରି ସଂସାରର ବିଷୟ ଜଂଜାଳରୁ ମୁକ୍ତ ପାଇ ତାର ମନ ସେହି ପରମାନନ୍ଦ ସତ୍ତ୍ୱରେ ମଜ୍ଜି ରହିଛି ।

ମଠିଆ ମଧ୍ୟରେ ଯୁଧିଷ୍ଠିର ପରମ ପୁରୁଷଙ୍କୁ ଚିନ୍ତା କରୁଥିଲେ । ଯେତେବେଳେ ତାଙ୍କର ଦୃଷ୍ଟି ଏଭଳି ଏକ ଚମତ୍କାର ପୁରୁଷଙ୍କ ଉପରେ ପଡ଼ିଲା ସେତେବେଳେ ସେ ଧାଡ଼ିକାରେ ଆସନ ତ୍ୟାଗ କରି ତାଙ୍କ ପାଖରେ ପହଞ୍ଚିଲେ ।

ସାକ୍ଷାତ ଗୁରୁଙ୍କ ଭଳି ଈଶ୍ୱରଙ୍କ ଚିହ୍ନ ବର୍ଣ୍ଣ ଧାରଣ କରି ଛଦ୍ମ ତପସ୍ୱୀ ବସିଛି । ଯୁଧିଷ୍ଠିର ଦେବ ମନେ କଲେ ବହୁ ପୁଣ୍ୟ ଫଳରୁ ଏହାଙ୍କ ଭଳି ମହା ପୁରୁଷଙ୍କ ସାକ୍ଷାତ ପାଇଲି ।

ଅତି ବିନମ୍ର ହୋଇ ଯୁଧିଷ୍ଠିର ପ୍ରଣିପାତ ହେଲେ । ତାଙ୍କ ସେବାପାଇଁ କଣ ଆବଶ୍ୟକ ତାଙ୍କୁ ଅତି ନମ୍ର ସହକାରେ ପଚାରିଲେ । କିନ୍ତୁ ତପସ୍ୱୀ ନୀରବ ।

ଦେଖୁ ଦେଖୁ ଭୀମ, ନକୁଳାଦି ଭାଇମାନେ ପହଞ୍ଚିଗଲେ । ଯୁଧିଷ୍ଠିର ଭୀମଙ୍କୁ କହିଲେ, ଆରେ ବାବୁ ଶହେଜଣ କୃଟୁମ୍ବଙ୍କ ସହିତ ଜଣେ ଅଭ୍ୟାଗତ ସମାନ । ଶହେଜଣ ଅଭ୍ୟାଗତଙ୍କ ସହିତ ଜଣେ ବ୍ରାହ୍ମଣ ସମାନ ହୁଅନ୍ତି । ପୁଣି ଶହେଜଣ ବ୍ରାହ୍ମଣଙ୍କ ସହିତ ଜଣେ ତପୋଧନୀ ଲେଖାହେବେ । ମାତ୍ର ଯଦି ଜଣେ ମହାମୁନୀଙ୍କୁ ସାକ୍ଷାତ କରାଯାଏ ତେବେ ଶହେଜଣ ତପୋଧନୀଙ୍କ ଧର୍ମ ମିଳିପାରିବ । ସେହିଭଳି ଶହେଜଣ ମହାମୁନୀଙ୍କ ସେବାରେ ଯେଉଁ ଫଳ ମିଳିବ ଜଣେ ମହାଋଷିଙ୍କ ସେବାରେ ସେହି ଫଳ ମିଳିଥାଏ । ଏ ଜଣେ ଭିକ୍ଷାରୀ, ଯୋଗୀ । ଏହାଙ୍କ ସହିତ ଶହେଜଣ ମହାଋଷିଙ୍କୁ ସମାନ କରିବା କଥା ।

ଆଜି ଆମର ବଡ଼ ଭାଗ୍ୟ । ଏଭଳି ଏକ ମହାତ୍ମା ଆମ ଦୁଆରେ ପାଦ ପକାଇଛନ୍ତି । ଯୁଧିଷ୍ଠିର ଦେବ ଯେତେ ଭକ୍ତି କଲେ ମଧ୍ୟ ସେ ତାଙ୍କୁ କୌଣସି ସମସ୍ୟା ଦେଲେନାହିଁ ! ବାରଂବାର ଯୁଧିଷ୍ଠିର ତାଙ୍କୁ କଣ୍ଠାଳ କରିବାରୁ ମାୟା ତପସ୍ୱୀ ତଳେ ଲେଖିଦେଲେ,ଅନ୍ନ ଭୋଜନ ମୋର ଅଭ୍ୟାସ ନାହିଁ । 'ବୃନ୍ଦାହୋଳ' ବୋଲି ଏକ ଲତା ଅଛି । ତାହାକୁ ଛେଦନ କଲେ ତନ୍ମଧ୍ୟରୁ ଯେଉଁ ରସ ବାହାରେ,ତହିଁରୁ ଆମ୍ଭେ ମାଳୁଆଏ (କାଠପାତ୍ର ବିଶେଷ) ପିଇଥାଉ । ସେ ଦ୍ରବ୍ୟ ବ୍ୟତୀତ ଆମ୍ଭେ ଅନ୍ୟ କୌଣସିରେ ସନ୍ତୁଷ୍ଟ ନୋହୁ ।

ଯୋଗୀଙ୍କ ମୁହଁରୁ ଶୁଣୁ ଶୁଣୁ ଯୁଧିଷ୍ଠିର ବଡ଼ ବ୍ୟସ୍ତ ହୋଇ ପଡ଼ିଲେ ।

ଆରେ ଭୀମ, ଆରେ ନକୁଳ, ଆରେ ସହଦେବ ସମସ୍ତେ ଯାଅ । ଯଦି କେହି ଚିହ୍ନିଥାଅ ତେବେ ସେ ଲତା ଠାବ କରି ତା ରସ ଆଣ ! ନ ଚିହ୍ନିଥିଲେ ବଣର ଶବର କିରାତମାନଙ୍କୁ ପଚାରି ଶୀଘ୍ର ତା ରସ ଆଣ । ଏଭଳି ଗଛ ବି ଆମର ଚିହ୍ନି ରଖିବା ଭଲ । ଆମେ ବଣ ଜଙ୍ଗଲରେ ବୁଲୁଛୁ । ଆମପକ୍ଷେ ତାହା ବଡ଼ ମୌଷଧି ।

ଜ୍ୟେଷ୍ଠ ଭାଇଙ୍କ ଠାରୁ ଆଦେଶ ପାଇ ଭୀମ, ନକୁଳ, ସହଦେବ ବୃନ୍ଦାବୋଳ ଲତା ଖୋଜିବାକୁ ବନ ମଧ୍ୟକୁ ଚାଲିଗଲେ । ସେମାନେ ତ ତାହା ଚିହ୍ନନ୍ତି ନାହିଁ, ବଣରେ ଯାହାକୁ ପଚାରିଲେ ସେ ଚିହ୍ନେନାହିଁ ବୋଲି କହିଦିଏ । ତଥାପି ଭାଇମାନେ ଲତା ଖୋଜି ଚାଲିଲେ ।

ଦ୍ରୌପଦୀ ସ୍ନାନ କରିବାକୁ ନଦୀକୁ ଯାଇଛନ୍ତି । ଭାଇମାନେ ସମସ୍ତେ ବୃନ୍ଦାବୋଳ ଲତା ଚିହ୍ନିବାରେ ବ୍ୟସ୍ତ । ଛଦ୍ମ ତପସ୍ୱୀ ଦେଖିଲା ଏହା ତା ପକ୍ଷେ ସୁବର୍ଣ୍ଣ ସୁଯୋଗ ।

ମାୟା ତପସ୍ୱୀ ପଦ୍ମାସନରେ ବସିଛି । ତା ଆଗରେ ଯୁଧିଷ୍ଠିର ମଧ୍ୟ ପଦ୍ମାସନଟିଏ ପକାଇ ବସି ପଡ଼ିଛନ୍ତି । ଛଦ୍ମ ତପସ୍ୱୀ ମୁଣିରୁ ମାୟା ବିଭୂତି କାଢ଼ି 'ଧେନରେ ପୋତା' ବୋଲି କହି ଯୁଧିଷ୍ଠିରଙ୍କୁ ଦେଲେ । ଯୁଧିଷ୍ଠିର ତାହା ଆନନ୍ଦ ଭକ୍ତି ଗଦ୍ ଗଦ୍ ହୋଇ କପାଳ ଏବଂ ଦେହରେ ବୋଳି ଦେଲେ ! ସତେ ଯେପରି ଏଭଳି ଏକ ଅମୂଲ୍ୟ ଦ୍ରବ୍ୟ କେବେ ସେ ପାଇନଥିଲେ ।

ଛଦ୍ମ ତପସ୍ୱୀଙ୍କ ବିଭୂତିର ଗୁଣ ବଡ଼ ଚମତ୍କାର । ବିଭୂତି ଦେହରେ ବୋଳି ଦେବା ସଙ୍ଗେ ସଙ୍ଗେ ଯୋଗୀ ଶୂନ୍ୟ ହୋଇଗଲେ । ଆସ୍ଥାନ ସହିତ ସେ ଶୂନ୍ୟରେ ଭାସିବାକୁ ଲାଗିଲେ । ମାୟା ବିଭୂତି ଓ ମନ୍ତ୍ର ପ୍ରସାଦରେ ଯୁଧିଷ୍ଠିରଙ୍କ ଆସ୍ଥାନ ମଧ୍ୟ ଧୀରେ ଧୀରେ ଶୂନ୍ୟକୁ ଉଠି ଶୂନ୍ୟରେ ଭାସିବାକୁ ଲାଗିଲା । ମହାନନ୍ଦ ଯୁଧିଷ୍ଠିର ଦେବ । ବହୁଦିନ ପରେ ସେ ଏକ ମହାନ୍ ମହାପୁରୁଷଙ୍କ ସାକ୍ଷାତ ଲାଭ କରିଛନ୍ତି । ବହୁ ତପସ୍ୟା, ବହୁଭାଗ୍ୟର ଫଳ ଏହା । "ଆସ ଆସ ପୋତା" ବୋଲି ଡାକି ଶୂନ୍ୟରେ ଭଣ୍ଡତପସ୍ୱୀ ଲାଗି ରହିଛନ୍ତି । ପଛେ ପଛେ ଭକ୍ତି ଗଦ୍‌ଗଦ୍ ଚିତ୍ତରେ ଚାଲିଛନ୍ତି ଯୁଧିଷ୍ଠିର । ରାକ୍ଷସ ହିରଣ୍ୟ ଗର୍ଭପୁର ପର୍ଯ୍ୟନ୍ତ ତାଙ୍କୁ ଉଡ଼ାଇ ନେଇ ତଳକୁ ଓହ୍ଲାଇ ପଡ଼ିଲା । ତାଙ୍କୁ ଅନୁସରଣ କଲେ ଯୁଧିଷ୍ଠିର ।

ଗତିବିହୀନ ହୋଇ ମାଟିରେ ଆସନ ସ୍ଥିରହୋଇ ରହିବା ମାତ୍ରେ ଯୁଧିଷ୍ଠିର ଦେବ ଦେଖିଲେ ଏ ଗୋଟାଏ ନରସ୍ତକ ଭୁବନ । ଚତୁର୍ଦ୍ଦିଗରେ ଅସଂଖ୍ୟ ଦାନବ

ତାଙ୍କୁ ଲକ୍ଷ କରୁଛନ୍ତି । ବକଟାଳ ଖାଙ୍କର କେଣି ଦାନବଙ୍କୁ ଦେଖି ତାଙ୍କୁ ଆଉ ଜାଣିବାକୁ ବାକି ରହିଲା ନାହିଁ ଏହା ଗୋଟାଏ ଦାନବପୁର ବୋଲି । ତାଙ୍କ ପଞ୍ଚଭୂତ ଆତ୍ମା ଭୟରେ ଶିହରି ଉଠିଲା ।

କଦ୍ରୁତାଳକ ରୂପଧାରି ରାକ୍ଷସ ଯୁଧିଷ୍ଠିରଙ୍କ ଭୁଜ ଆଜାନୁ ଧରିଲା । ବକଟାଳ ବଦନ ବକଟାଳ ଖାଙ୍କର କେଣ ସେ ରାକ୍ଷସର । ଦେହ ତାର ବଗପକ୍ଷୀ ଭଳି ଧଳା ହେଲେ ମଧ୍ୟ ବିବସ୍ତ୍ର । କୋଟରଗତ ଚକ୍ଷୁ ଦୁଇଟି ବଡ଼ ଭୟଙ୍କର ।

ଯୁଧିଷ୍ଠିରଙ୍କ ହାତକୁ କିଠାଇକରି ଧରି ରାକ୍ଷସ କହିଲା, "ତୁ ପରା ଅର୍ଜୁନର ବଡ଼ଭାଇ ! ସେ କାହିଁକି ମୋର ପିତା କିର୍ମୀରକପତକୁ ବଧ କଲା ? ତୋ ଭାଇ ଯେତେବେଳେ ମୋ ବାପକୁ ବଧ କରିଛି ସେତେବେଳେ ତୁ ବି ମୋର ଶତ୍ରୁ । ଅର୍ଜୁନକୁ ତ ଖୋଜି ପାଇଲି ନାହିଁ, ତେଣୁ ତୋର ମାଂସକାଟି ଅଗ୍ନିକୁଣ୍ଡରେ ପକାଇ ପୋଡ଼ି ଖାଇବି ।"

ରାକ୍ଷସ ବାମହାତରେ ଯୁଧିଷ୍ଠିରଙ୍କର ଗୋଟିଏ ହାତକୁ ଭିଡ଼ିଧରି ଅପର ହାତରେ କଟାରି ହାଣିବ ବୋଲି ଧରି ଛିଡ଼ା ହୋଇଛି । ତାର ସେ ଭୟଙ୍କର ମୂର୍ତ୍ତି ଦେଖିଲେ ମନେହେବ ଯେପରି ସାକ୍ଷାତ ଯମ । ସରଳମନା ଯୁଧିଷ୍ଠିରଙ୍କ ମୁଖ ଅଗ୍ନିଦଗ୍ଧ ପଦ୍ମଭଳି ଝାଉଁଳି ପଡ଼ିଛି ।

ମୁହୂର୍ତ୍ତକ ମଧ୍ୟରେ ପ୍ରଚାର ହୋଇଗଲା ରାଜା ପିତୃହନ୍ତାର ଭାଇକୁ ଧରି ଆଣିଛନ୍ତି । ସମ୍ବାଦ ପହଞ୍ଚିଲା ମହାମନ୍ତ୍ରୀ ଶୁକଙ୍କ କାନରେ । ତେବେ ଯୁଧିଷ୍ଠିର ରାକ୍ଷସଙ୍କ କବଳରେ ପଡ଼ିଛନ୍ତି । କଥାଟା ଶୁଣି ଶୁଣୁ ସେ ଧାଇଁ ଆସିଲେ ଯେଉଁଠାରେ ରାକ୍ଷସ ଯୁଧିଷ୍ଠିରଙ୍କୁ ଧରି ଛିଡ଼ା ହୋଇଛି ।

ରାକ୍ଷସ ଉଞ୍ଚାଇଛି ଯୁଧିଷ୍ଠିରଙ୍କୁ କଟାରି । ସମ୍ଭବତଃ ବର୍ତ୍ତମାନ କଟାରିର ଚୋଟଟି ଯୁଧିଷ୍ଠିରଙ୍କ ଗଳ ଦେଶରେ ବାଜିବ । ବଡ଼ ବ୍ୟସ୍ତ ହୋଇପଡ଼ି ସେ ବଡ଼ ପାଟିରେ ରାକ୍ଷସକୁ ଡାକି କହିଲେ ଆରେ ଏ କଣ ତୁ କରୁଛୁ । ବିଚରା ଯୁଧିଷ୍ଠିରଙ୍କୁ ଟାକୁ ହାଣୁଛୁ କାହିଁକି ? ସେ କଣ ତୋ ବାପକୁ ମାରିଛି ? ତୋ ବାପକୁ ମାରିଛି

ଇନ୍ଦ୍ରର ପୁଅ ଅର୍ଜୁନ । ଏ ତ ଧର୍ମଙ୍କ ପୁଅ ଯୁଧିଷ୍ଠିର । ନ୍ୟାୟ ବଳରେ ଏହାଙ୍କର ତ କିଛି ଦୋଷ ନାହିଁ । ତୁ କେବଳ ବଳବନ୍ତ । ଶତ୍ରୁ ବଧ କଲେ ତୋର ସିନା ଯଶ ହେବ । ଏ ଭଳି ଯେତିକ ଧର୍ମବନ୍ତ ପୁରୁଷଙ୍କୁ ମାରି ତୋର କଣ ବା ଲାଭ ହେବ ? ଖାଲି ଲୋକେ ତୋର ଅପଖ୍ୟାତି ଗାଇବେ— ହିରଣ୍ୟ-କପଟ ଭଳି ବଳବନ୍ତ ରାଜା ଗୋଟାଏ ଧାର୍ମିକ ଲୋକଙ୍କୁ ବଧ କରି କାପୁରୁଷ ପଣ ଦେଖାଇଛି ।

ହିରଣ୍ୟକପଟ କହିଲା, 'ତାହାହେଲେ କଣ ଏହାଙ୍କୁ ଛାଡ଼ିଦେବ ?'

ନା ଛାଡ଼ିବୁ କାହିଁକି ! ଏହାଙ୍କୁ ବନ୍ଦୀକରି ରଖିଲେ ଅର୍ଜୁନ ଶୁଣି ସ୍ୱର୍ଗରୁ ପଳାଇ ଆସିବ । ସେତିକି ବେଳେ ତୁ ସ୍ୱର୍ଗ ଆକ୍ରମଣ କରି ଇନ୍ଦ୍ରଙ୍କୁ ପରାସ୍ତ କରିବୁ । ଏହାଙ୍କୁ ମାରିଲେ ଅର୍ଜୁନ ରାଗିବ— ଫଳରେ ଆମେ ସମସ୍ତେ ତା ହାତରେ ମରିବା ।

ଏକେତ ହିରଣ୍ୟକପଟ ଜାତିରେ ଅସୁର । ବୟସ ପୁଣି ତାର ଅଳ୍ପ । ଗୁରୁଙ୍କ ବାକ୍ୟ ଅବହେଳା କରିବାକୁ ତାର ଶକ୍ତି କାହିଁ । ସେ ସଙ୍ଗେ ସଙ୍ଗେ ଆଦେଶ ଦେଲା ଏହାଙ୍କୁ ନେଇ ବନ୍ଦୀ ଘରେ ରଖ ।

ଯୁଧିଷ୍ଠିର ରାକ୍ଷସ ପୁରରେ ବନ୍ଦୀ ହେଲେ । ତାହା ଶ୍ରୀମାନ୍ ଭାଇମାନେ ଜାଣିବେ କପରି ? ସେମାନେ ସାରା ବନଯାକ ବୁଲି ବୁଲି ବୃନ୍ଦାବୋଳ ଲତା ଖୋଜୁଥାନ୍ତି । ସାରା ବଣଟାକୁ ଛିନ୍ ଭିନ୍ କରି ଖୋଜି ଖୋଜି ପହଞ୍ଚିଲେ ଅନନ୍ତ-ଭାଗୀ ନଦୀ କୂଳରେ । ଭାଗ୍ୟକୁ ସେଠାରେ ସେମାନେ ଭେଟିଲେ ମହାମୁନି ବ୍ୟାସଙ୍କୁ ।

ବ୍ୟାସଙ୍କୁ ତିନିହେଁ ପ୍ରଣାମ କଲେ ।

ବ୍ୟାସ ସେମାନଙ୍କର ମଙ୍ଗଳ ବାଞ୍ଛା କରି କହିଲେ, ତୁମ୍ଭେ ତ ତିନିଭାଇ ଏଠାରେ ବୁଲୁଛ, କାହିଁ ତୁମ ସହିତ ଧର୍ମ ଯୁଧିଷ୍ଠିରଙ୍କୁ ତ ଦେଖୁନାହିଁ ?

ଭୀମ କହିଲେ, ଆପଣ ଶୁଣନ୍ତୁ ଧାତୁଗିରି ଉପରକୁ । ସେଠାକୁ ଜଣେ ମହାପୁରୁଷ ଆସିଛନ୍ତି । ଯାଇ ତାଙ୍କର ପାଖରେ ବସିଛନ୍ତି । ସେ ପୁରୁଷ ଆଉ କିଛି ଆହାର କରନ୍ତି ନାହିଁ କେବଳ ବୃନ୍ଦାବୋଳ ଲତା ରସ ମାଲୁଆରେ ପିଅନ୍ତି । ସେଥିପାଇଁ ଆମେ ଭାଇମାନେ ଆସିଛୁ ସେ ଲତାଖୋଜି ରସ ନେବାକୁ ।

ବୃନ୍ଦାବୋଳ ଲତା ? ଆଶ୍ଚର୍ଯ୍ୟ ହେଲେ ବ୍ୟାସ ଭୀମଠାରୁ ମହାପୁରୁଷଙ୍କ କଥା ଶୁଣି । ସେ ତିନିଭାଇଙ୍କୁ ଅନାଇ କହିଲେ, "ତୁମେ ଭାଇମାନେ ଭଲକାର୍ଯ୍ୟ କରିନାହଁ । ନିଶ୍ଚୟ (ନିଶ୍ଚୟ) ସେ ମହାପୁରୁଷରୂପୀ ଗୋଟାଏ ଅସୁର । ଛଦ୍ମ ଯୋଗୀବେଶ ଧାରଣ କରି ସେ ଆସିଛି ତୁମର ସର୍ବନାଶ କରିବାକୁ । ମୋର ମନେ ହେଉଛି ସୋମବଂଶ ବୁଡ଼ିଲା । ଏଠାରୁ ଫେରି ଯାଇ ଦେଖ ସେ ତପସ୍ୱୀ ନ ଥିବେ କି ଯଜ୍ଞସେନୀ ନ ଥିବେ ।"

ସ୍ନାନସାରି ଦ୍ରୌପଦୀ ଫେରିଆସି ଭାଇମାନଙ୍କୁ ମଢ଼ିଆରେ ନ ଦେଖି ଚତୁର୍ଦ୍ଦିଗରେ ଅନ୍ୱେଷଣ କରୁଛନ୍ତି । ଏତିକିବେଳେ ଭୀମ ନକୁଳ ସହଦେବ ପ୍ରବେଶ କଲେ । ଦୂରରୁ ସେମାନେ ଦ୍ରୌପଦୀଙ୍କର ବିରାଗଭାବ ଲକ୍ଷକରି ନିଶ୍ଚୟ କିଛି ଗୋଟାଏ ହୋଇଛି ଧାରଣା କରିନେଲେ । ତତ୍ପରେ ଧାଇଁ ଆସି ଦ୍ରୌପଦୀଙ୍କୁ ପଚାରିଲେ, ଭାଇ ଗଲେ କୁଆଡ଼େ ?"

ଦ୍ରୌପଦୀ କହିଲେ ସେତ ଏଇଠି ବସିଥିଲେ, କୁଆଡ଼େ ଗଲେ ମୁଁ ତ ଜାଣେ ନାହିଁ ।

ଭାଇ ତିନିହେଁ ଚଉକତି ଆଖି ବୁଲାଇ ଆଣିଲେ । ଭୀମସେନ ଏକ ବଡ଼ ଗଛଉପରେ ଚଢ଼ି ବଡ଼ ପାଟିରେ ଡାକ ଦେଲେ, ଭାଇ ଭାଇ ବୋଲି ।

ନିର୍ଜନ ବନଭୂମିରେ ଭୀମଙ୍କ ଡାକ ପ୍ରତିଧ୍ୱନିତ ହୋଇ ତାଙ୍କର ପାଖକୁ ଫେରିଆସିଲା । ଯେତେ କାନ ଡେରିଲେ ବି ଉତ୍ତର ଶୁଣାଗଲା ନାହିଁ ।

ବ୍ୟସ୍ତ ହୋଇ ପଡ଼ିଲେ ଦ୍ରୌପଦୀଙ୍କ ସହିତ ଭାଇମାନେ । ଭୀମସେନ ସହଦେବଙ୍କୁ ପଚାରିଲେ, "ଯୁଧିଷ୍ଠି ଠାକୁରେ ଗଲେ କୁଆଡ଼େ ?"

ସହଦେବ ନିଜ କରପତ୍ରକୁ ଚୃହିଁ ଯାହା ଜାଣିଲେ ତାହା କହିବାକୁ ଚେଷ୍ଟାକରି ତାଙ୍କ ପାଟି ଖନି ବାଜିଗଲା । କହୁ କହୁ ମୂର୍ଚ୍ଛା ଗଲେ ।

ମୂର୍ଚ୍ଛିତ ସହଦେବଙ୍କୁ କୋଳରେ ଧରି ନକୁଳ ସିଞ୍ଚା ବାଞ୍ଚା କଲେ । କିଛି ସମୟ ପରେ ସେ ଟିକିଏ ସଚେତ ହୋଇଉଠି ବସିଲେ ।

ଏଥର ଯୁଦ୍ଧିଷ୍ଠିରଙ୍କ ଖବର କହିବାକୁ ଯାଇ ସହଦେବ କହିଲେ ବ୍ୟାସ-ଦେବ ଯାହା କହୁଥିଲେ ତାହା ପୁରା ସତ । ଆଜିଠାରୁ ସୋମବଂଶ ବୁଡ଼ିଲା । ନିବୋଧ ଅସୁର ପୁତ୍ର ନିବାତ । ତାହାକୁ ଅର୍ଜୁନ ଠାକୁରେ ବଧ କଲେ । ତାହାର ପୁତ୍ର ହିରଣ୍ୟକପଟ । ସେହି କାମରୂପୀ ଅସୁର ଯୋଗୀ ବେଶ ଧରି ଆସି କପଟରେ ଆମକୁ ବନକୁ ପଠାଇ ଯୁଦ୍ଧିଷ୍ଠିରଙ୍କୁ ହରି ନେଇଗଲା । ସେ ଖଡ୍ଗ ଧାରଣ କରି ତାଙ୍କୁ ହାଣିବ ବୋଲି ବସିଥିଲା । ମାତ୍ର ତାର ମନ୍ତ୍ରୀ ଶୁକ୍ର ତାକୁ ବାରଣ କରିବାରୁ ସେ ପ୍ରାଣରେ ନ ମାରି ହିରଣ୍ୟଗର୍ଭ ପୁରରେ ବନ୍ଦୀକରି ରଖିଛି ।

ଯୁଦ୍ଧରେ ଯେ ଭୟଙ୍କର, ଶରଣ ପଶିଲେ ବି ଶତ୍ରୁକୁ ଯେ ଓପ୍ରୋଧ କରେ-ନାହିଁ ସେହି ନିଷ୍ଠୁର ପ୍ରକୃତି ଭୀମ ଭାଇ ଭାଇ ବୋଲି କାନ୍ଦି ଗଡ଼ିଗଲା ତଳେ ।

ଦ୍ରୌପଦୀଙ୍କ କାନ୍ଦଣା କହିଲେ ନ ସରେ । ତାଙ୍କର ଆରମ୍ଭ ହୋଇଗଲା ବାହୁନା "ତୁମ୍ଭ ନାମ ତ୍ରୈଲୋକର ଠାକୁର । ଲକ୍ଷେ ଲୋକ ତୁମ୍ଭର ବନ୍ଦନା ଗାଆନ୍ତି । ଅନଳବସୁ ଅନ୍ଧ ହୋଇଥିଲା—କେବଳ ତୁମ୍ଭର ଦର୍ଶନରେ ସେ ତାର ଚକ୍ଷୁ ଫେରି ପାଇଲା । ଏଇଲୋକର ଠାକୁର ଶ୍ରୀକୃଷ୍ଣ ତୁମ ଚରଣରେ ପ୍ରଳମ୍ଭ (ପ୍ରଣାମ) କରନ୍ତି । ତୁମେ କର ଲେଉଟାଇଲେ ନବସୃଷ୍ଟି ଲେଉଟି ପଡ଼ିବ । ଯେ ଅଜାତଶତ୍ରୁ ତାକୁ ପୁଣି କାହିଁକି କଏ ନେଲା ।"

ସମସ୍ତେ ଯୁଦ୍ଧିଷ୍ଠିର ପାଇଁ କାନ୍ଦୁଥିଲା ବେଳେ ମୁନିବ୍ୟାସ ପହଞ୍ଚିଲେ ।

ପ୍ରଥମେ ସେ କ୍ରନ୍ଦନରତ ଭାଇମାନଙ୍କୁ ସାନ୍ତ୍ୱନା ଦେଇ କହିଲେ, ଦ୍ରୌପଦୀଙ୍କୁ ସାନ୍ତ୍ୱନ କରାଅ । ବିଷାଦ ଯଦି ପ୍ରାଣ ନାଶ କରିଥାନ୍ତା ତେବେ ପିତା

ତୁମେ ଅନାଥ ହୋଇ କାନ୍ଦନ୍ତ । ଧର୍ମବଳରୁ ସେ ଯେତେବେଳେ ରକ୍ଷା ପାଇଛନ୍ତି ସେତେବେଳେ ବର୍ତ୍ତମାନ ସେ କପରି ଉଦ୍ଧାର ହେବେ ସେହି ଚିନ୍ତା କରିବା ଉଚିତ୍ ।

ବ୍ୟାସଙ୍କ କଥାରେ ସମସ୍ତେ ତୁନି ହେଲେ ।

ବ୍ୟାସ ଚିନ୍ତା କଲେ ଦ୍ୱାରକାନାଥ ଶ୍ରୀକୃଷ୍ଣଙ୍କୁ ।

ଦ୍ୱାରକାରେ ଶ୍ରୀକୃଷ୍ଣଙ୍କ ଆସନ କମ୍ପମାନ ହେଲା । ସେ ଦତ୍ତଚିତ୍ତ ହେଲେ ବିଳମ୍ବ ନ କରି ଗରୁଡ଼ ଆରୋହି ଧାତୁଗିରିରେ ଉପଗତ ହେଲେ । ତାଙ୍କୁ ଦେଖି ଦେଖି ଦ୍ରୌପଦୀଙ୍କ ସହିତ ଭୀମ, ନକୁଳ, ସହଦେବ କାନ୍ଦି ଉଠିଲେ । ଶ୍ରୀକୃଷ୍ଣ ପ୍ରତ୍ୟେକଙ୍କୁ ବୋଧ ଦେଇ ସହଦେବଙ୍କୁ ଡାକିଲେ ପ୍ରକୃତ କଣ ହୋଇଛି ବୁଝିବାକୁ ।

ସହଦେବ ବିସ୍ତାରିତ ଭାବରେ ସବୁ କଥା ଶ୍ରୀକୃଷ୍ଣଙ୍କୁ କହିଲେ ।

ଚିନ୍ତାମଣିଙ୍କର ଏ ଗୋଟାଏ ମହା ଚିନ୍ତାର ବିଷୟ । ସେ ବ୍ୟାସଙ୍କୁ ଡାକି କହିଲେ, ଏବେ କଣ କରିବା । ଅର୍ଜ୍ଜୁନ ଆକାଶପୁରରେ ରହିଲା । ଆମେ ଯଦି ଦଣ୍ଡ ସାଜି ଯୁଧିଷ୍ଠିରଙ୍କ ମୁକ୍ତି ପାଇଁ ଯିବା ତେବେ ରାକ୍ଷସ ଜାଣି ପାରିଲେ ଯୁଧିଷ୍ଠିରଙ୍କୁ ମାରି ଦେଇପାରେ । ମାତ୍ର କେହି ଯେବେ ଗୁପ୍ତରେ ଯାଇ ଯୁଧିଷ୍ଠିରଙ୍କୁ ସମ୍ଭାଳି ପାରନ୍ତା ତାହାହେଲେ ହୁଅନ୍ତା ।

ସହଦେବ ଆଡ଼କୁ ଶ୍ରୀକୃଷ୍ଣ ଅନାଇଲେ । ସହଦେବ କରଯୋଡ଼ି ବ୍ୟକ୍ତ କଲେ ହିରଣ୍ୟ ଗର୍ଭପୁରରେ ହରଚଣ୍ଡୀ ଦେବୀ ଅଛନ୍ତି । ସେ ଦେବୀଙ୍କ ଆଗରେ ଯୁଧିଷ୍ଠିରଦେବଙ୍କୁ ବଳୀ ଦେବ ବୋଲି ରାକ୍ଷାସ ମନାସିଛି । ତେଣୁ ସାବଧାନରେ ସବୁ କରିବାକୁ ହେବ ।

ଚିନ୍ତାମଣିଙ୍କର ଚିନ୍ତିତ ଅବସ୍ଥା ଲକ୍ଷ୍ୟକରି ଗରୁଡ଼ କହିଲେ, ମୁଁ ଗୋଟାଏ କଥା ଭାବୁଛି, ତାହା କଲେ ବୋଧେ ଭଲ ହୁଅନ୍ତା । ମୋତେ ହିରଣ୍ୟ ଗର୍ଭପୁରକୁ ଯିବାପାଇଁ ଆଜ୍ଞା ହେଉ ।

ଏତିକିବେଳେ ସହଦେବ କହିଲେ, ହିରଣାକ୍ଷୀ ଠାକୁରାଣୀ ଭଲ ବିପ୍ରଟିଏ ପାଇଲେ ତାକୁ ପରମ ଆନନ୍ଦରେ ଭକ୍ଷଣ କରିଥାଏ। ଗରୁଡ଼ ଯଦି ବ୍ରାହ୍ମଣ ବେଶ ହୋଇଯାଆନ୍ତି ତେବେ ରାକ୍ଷସମାନେ ନିଶ୍ଚୟ ତାଙ୍କୁ ଧରିନେଇ ଠାକୁରାଣୀଙ୍କ ପାଖରେ ଛାଡ଼ ଦିଅନ୍ତେ।

ଶ୍ରୀକୃଷ୍ଣ ଗରୁଡ଼ଙ୍କୁ ହକାରି ଆଜ୍ଞା ଦେଲେ, ହିରଣ୍ୟଗର୍ଭପୁର ଯିବାପାଇଁ ମୋ ବନ୍ଧୁରରେ ତୁ ଏକା ସମର୍ଥ। ତୁ ସେଠାକୁ ଯାଇ କୌଣସି ପ୍ରକାରରେ ଉପାୟ ବୁଦ୍ଧି କରି ଯୁଧିଷ୍ଠିରଙ୍କୁ ଆବୋରି ରଖିଥିବୁ। ଯେପରି ତାଙ୍କର କୌଣସି ଅନିଷ୍ଟ ନ ହୁଏ।

ନାରାୟଣଙ୍କ ଆଜ୍ଞାରେ ଗରୁଡ଼ ସେହି ମୁହୂର୍ତ୍ତରେ ସଜହେଲ ଯିବାପାଇଁ। ଯିବା ପୂର୍ବରୁ ସେ ସହଦେବଙ୍କୁ କହିଲ, "ସହଦେବ! ତୁମେ ତ ସବୁକଥା ଇଚ୍ଛାକଲେ ଜାଣିପାରିବ। ମୁଁ ଯେତେବେଳେ ଯୁଧିଷ୍ଠିରଦେବଙ୍କୁ ଭେଟିବି ତୁମ୍ଭେ ସେତେବେଳେ ସଂଗ୍ରାମ ପାଇଁ ପହଞ୍ଚିଯିବ। ଯେତେବେଳେ ଅସୁର ତୁମ୍ଭ ପାଖକୁ ସୈନ୍ୟ ଧରି ଛୁଟିବ ସେତେବେଳେ ମୁଁ ଯୁଧିଷ୍ଠିରଙ୍କୁ ଧରି ଚାଲି ଆସିବି। ଏପରିକଲେ ସମ୍ଭବତ ଅସୁବଧା ହୋଇପାରେ।

ଏହାପରେ ନାରାୟଣଙ୍କୁ ପ୍ରଣାମ କରି ବିଇନେୟ ହିରଣ୍ୟଗର୍ଭପୁର ଆଡ଼କୁ ଉଡ଼ିଗଲ।

ହିରଣ୍ୟଗର୍ଭପୁର ସୀମାରେ ଗରୁଡ଼ ନିଜକୁ ଏକ ଶ୍ରୋତ୍ରିୟ ବ୍ରାହ୍ମଣ ବେଶରେ ସଜାଇନେଲ। ତା ପରେ ସେ ରାଜ୍ୟରେ ବେଦଧ୍ୱନି କରି କରି ରାଜନଗର ଆଡ଼କୁ ଆଗେଇ ଗଲା। ରାଜ୍ୟର ସୁଶାସନ ନିମିତ୍ତ ରାଜ୍ୟର ଚତୁର୍ଦ୍ଦିଗରେ ଅସୁର ସୈନ୍ୟ ଜଗି ରହିଛନ୍ତି। ଯେତେବେଳେ ସେମାନେ ଶୁଣି-ବାକୁ ପାଇଲେ ସୁଲଳିତ କଣ୍ଠରେ କିଏ ଜଣେ ବେଦ ପଢ଼ି ପଢ଼ି ଆସୁଛି ସେତେବେଳେ ଅତି ସତର୍କତାର ସହିତ ସ୍ୱର ଅନୁସରଣ କରି ଗରୁଡ଼ଙ୍କୁ ଘେରି-ଗଲେ। ଅତି ସାଧାରଣ ବ୍ରାହ୍ମଣଙ୍କ ଭଳି ଗରୁଡ଼ ଧରାଦେଲେ ରାକ୍ଷସମାନଙ୍କୁ।

ରାକ୍ଷାସମାନଙ୍କ ଦ୍ୱାରା ଗରୁଡ଼ ଧରାହୋଇ ବନ୍ଦୀ ଅବସ୍ଥାରେ ହିରଣ୍ୟକପଟ ପାଖକୁ ଚାଲିଲେ । ଅବିଳମ୍ବେ ରାକ୍ଷାସରାଜ ହିରଣ୍ୟକପଟ ସମ୍ମୁଖରେ ଗରୁଡ଼ଙ୍କୁ ଉପସ୍ଥିତ କରାଗଲା ।

ଗରୁଡ଼ର ସୁନ୍ଦର ବ୍ରାହ୍ମଣ ରୂପ ଦେଖି ହିରଣ୍ୟକପଟ କହିଲା, "ଯାହାହେଉ ଜଗନ୍ମାତା ନିଜ ମୁଁଶୋହି ନିମିତ୍ତ ଏହାକୁ ଆଣିଛନ୍ତି ।"

ସଙ୍ଗେ ସଙ୍ଗେ ସେ ଆଦେଶ ଦେଲା, ଶୀଘ୍ର ଏହାକୁ ନେଇ ହିରଣାକ୍ଷୀଙ୍କ ଦେଉଳେ ଭରିଦିଅ । ଆଜି ଏ ହେଉ ଗୋସମଣୀଙ୍କର ପ୍ରିୟ ଆହାର ।

ଦେବୀ ହିରଣାକ୍ଷୀ ରାକ୍ଷସ ଦେବତା । ତାଙ୍କର ପ୍ରିୟ ଭୋଜନ ମଧ୍ୟରେ ବ୍ରାହ୍ମଣ ସର୍ବଶ୍ରେଷ୍ଠ । ସେଥିପାଇଁ ରାକ୍ଷସମାନେ ନିତ ନୂଆ ବ୍ରାହ୍ମଣ ଧରି ଆଣି ଦେବୀଙ୍କ ଦେଉଳର କବାଟ ଫିଟାଇ ଭରି ଦିଅନ୍ତି । ସେ ପିଶାଚୁଣୀ କଙ୍କାଳୀ ବ୍ରାହ୍ମଣ ପାଇଲେ ଉଦ୍ଧତ ହୋଇ ବିଶ୍ୱରୂପ ଧରି ଗୋଟା ଗୋଟା ଗିଳିଦିଏ ।

ରାଜାଦେଶରେ ଅସୁରମାନେ ଗରୁଡ଼ଙ୍କୁ ନେଇ ଦେଉଳ ଭିତରେ ଭରି ଦେଲେ । ପିଶାଚ ଦେବୀ ବ୍ରାହ୍ମଣ ବେଶୀ ଗରୁଡ଼ଙ୍କୁ ଦେଖୁ ଦେଖୁ ଆନନ୍ଦରେ ତା ଉପରକୁ କ୍ଷେପି ପଡ଼ିଲା । ଠିକ୍ ଏତିକିବେଳେ ଗରୁଡ଼ ପ୍ରକାଶ କଲେ ତାର ନିଜ ରୂପ । ବିଶ୍ୱରୂପ ଧାରଣ କରି ବଇନେଇ ହିରଣାକ୍ଷୀକୁ ଆକ୍ରୋଷି ଧଇଲା । ବିଚରା ରାକ୍ଷାସ ଦେବତା ହିରଣାକ୍ଷୀ ଭୟରେ କଥା କହିପାରିଲା ନାହିଁ । ଗରୁଡ଼ ସଙ୍ଗେ ସଙ୍ଗେ ଦେବୀଙ୍କୁ ଉତ୍ତାନଶାୟୀ କରି ତଳେ ପକାଇ ଦେଲା । ନିଚେଷ୍ଟ ହୋଇ ପଡ଼ି ରହିଲା ରାକ୍ଷାସ ଦେବତା । ଗରୁଡ଼ ତା ଥଣ୍ଟରେ ଦେବୀର ବକ୍ଷ ବିଦାରଣ କରିବାକୁ ଲାଗିଲା । ପ୍ରାଣ ଭୟରେ ହିରଣାକ୍ଷୀ ଘୋର ରଡ଼ ଦେବାକୁ ଲାଗିଲା ।

ବାହାରେ ଥିବା ରାକ୍ଷାସମାନେ ଭାବିଲେ ବ୍ରାହ୍ମଣଟା ଦେବୀଙ୍କ ଟଣାଓଟରା ସହି ନପାରି ପ୍ରାଣ ବିକଳେ ରଡ଼ ପକାଉଛି । ତେଣୁ ସେମାନେ ବଡ଼ ପାଟିରେ ଦେବୀଙ୍କୁ ଉଦ୍ଦେଶ୍ୟ କରି କହିଲେ, "ମାଗୋ ଶାକାମ୍ବରି ! ଆନନ୍ଦରେ ଭୁଞ୍ଜ, ଆନନ୍ଦରେ ଭୁଞ୍ଜ ।"

ପୁଣି ସେମାନେ ଗରୁଡ଼ ଉଦ୍ଦେଶ୍ୟରେ କହିଲେ, "ଆହେ ପକ୍ଷୀ ! ତୁମେ ମନ୍ଦିରରେ ଯେତେବେଳେ ବନ୍ଦୀ ହୋଇଛ, ଏତେବେଳକୁ କସରତ ହେଉଛ କାହିଁକି । ବିକଳ ହୋଇ ରଡ଼ ଦେଲେ କି ତୁମେ ଦେବୀଙ୍କଠାରୁ ରକ୍ଷା ପାଇଯିବ ?"

ଗରୁଡ଼ ହିରଣାକ୍ଷୀର ବକ୍ଷସ୍ଥଳ ବିଦାରଣ କରି ମାଂସ ଖଣ୍ଡ ଖଣ୍ଡ କଲା । ପିଶାଚୁଣୀ ଦେବୀ ପିନା ମଣିଷ, ପଶୁ ଆଦିଙ୍କ ଉପରେ କ୍ଷେପି ପଡ଼ି ତାଙ୍କୁ ମାରି ଖାଉଥିଲା ମାତ୍ର ଗରୁଡ଼ ପାଖରେ ତାର ଶକ୍ତି କାହିଁ ? ଏତେ ପ୍ରଚଣ୍ଡ ଦେବୀଙ୍କୁ ଗରୁଡ଼ ଥଂଘାତରେ ବିଦୀର୍ଣ୍ଣ କରିଦେଲା । ଶେଷରେ ତାର ନିଥର ଦେହଟି ସେଠାରେ ପଡ଼ିରହିଲା ।

ହିରଣାକ୍ଷୀକୁ ମାରି ଗରୁଡ଼ ଡାକ ଦେଲା ଦେ ! ଦେ !

ଦେବୀଙ୍କ ମନ୍ଦିର ଜଗିଥିବା ସେବକମାନେ ଧାଇଁ ଯାଇଁ ରାଜାଙ୍କୁ ଜଣାଇଲେ, "ଠାକୁରାଣୀ ବ୍ରାହ୍ମଣକୁ ଭକ୍ଷଣ କରି ପୁଣି ଦେ, ଦେ, ବୋଲି କହୁଛନ୍ତି !"

ରାଜା ଟିକିଏ ଚିନ୍ତା କରି କହିଲା, "ବୋଧେ ମହାମାଈ ବ୍ରାହ୍ମଣ ମାଂସ ଖାଇ ଶରୀର ଜାଳା ହେଉଛି, ତେଣୁ ସେ ଦେ, ଦେ, ବୋଲି କହୁଛନ୍ତି । ତୁମ୍ଭେ-ମାନେ ଶୀଘ୍ର ଶୀତଳ ଦ୍ରବ୍ୟମାନ ନେଇ ତା ଆଗରେ ବାଢ଼ ।"

ରାଜାଙ୍କ ଆଦେଶରେ ଶୀତଳ ଦ୍ରବ୍ୟ ସବୁ ନେଇ ରକ୍ଷସମାନେ ଆଖି ବୁଜି ଦେଉଳ ଭିତରେ ରଖିଦେଇ ଆସିଲେ । ଆମ୍ବ, ପଣସ, କଦଳୀ, ନଡ଼ିଆଜଳ, କେନ୍ଦୁ, ପଇଡ଼, ଖଜୁରୀ, ପୂଟିପଣା, ନବାତ, ଛେନା, ଶାକର ଆଦି ଶଗଡ଼ ଶଗଡ଼ କରି ନେଇ ଦେଉଳ ଭିତରେ ଦେଇ ଆସିଲେ ।

ମନ ଆନନ୍ଦରେ ଗରୁଡ଼ ସବୁ ଭୋଜନ କଲା । ମାତ୍ର ତଥାପି ସେ ଶାନ୍ତ ନୁହେଁ । ପୁଣି କ୍ରୋଧ ସ୍ୱରରେ ଦେ ଦେ ବୋଲି ଡାକ ଦେବାରେ ଲାଗିଲା ।

ଅସୁରେ ଧାଇଁଲେ ହିରଣ୍ୟକପଟ ପାଖକୁ । କୁଳଦେବୀ ଅତୃପ୍ତି ଯେତେବେଳେ, ସେତେବେଳେ ତାଙ୍କୁ ଯେ କୌଣସି ମତେ ତୃପ୍ତି କରିବାକୁ ହେବ ।

ରାଜାଙ୍କ ଆଦେଶ ହେଲା ଧରିଆଣ ସେ ପାଣ୍ଡବଙ୍କୁ । ମୁଁ ତାଙ୍କୁ ମନାସିଛି ଦେବୀଙ୍କୁ ଦେବାପାଇଁ ।

କିଙ୍କରପେ ଧାଇଁଲେ ଯୁବନାଶ୍ବଙ୍କୁ ବନ୍ଦୀଶାଳାରୁ ନେଇ ଆସିବାକୁ ।

ଅଳ୍ପ ସମୟ ମଧ୍ୟରେ ଯୁବନାଶ୍ବଙ୍କୁ ରାଜାଙ୍କ ପାଖରେ ଛିଡ଼ା କରାଇଲେ ।

ଆଦେଶ ହେଲା ଶୀଘ୍ର ଏହାଙ୍କୁ ମାର୍ଜଣା ସ୍ନାନ କରାଇ ଦେଉନ୍ତୁ ଭିତରେ ।

ରାଜାଙ୍କ ଆଦେଶ ପାଳିତ ହେଲା । ଯୁବନାଶ୍ବଙ୍କୁ ସ୍ନାନ କରାଇ ଦେଉଳ ଭିତରେ ଭରି ଦେଇ କହିଲେ, "ଆଗୋ ଗୋସାମିନୀ ! ବ୍ରାହ୍ମଣଙ୍କୁ ଅଧିକ ଦେବାକୁ ମଣି ଭକ୍ଷ୍ୟ ।"

ଯୁବନାଶ୍ବଙ୍କୁ ମନ୍ଦିର ଭିତରେ ଭରି କବାଟ କିଳିଦେଲେ ରାକ୍ଷସମାନେ ।

ମହା ଭୟରେ ଯୁବନାଶ୍ବ ଆକୁଳ । ଜୀବନର ଶେଷ ସମୟ ଜାଣି ସେ ପିତାମାତାଙ୍କ ସହିତ ଭଗବାନ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରିବାକୁ ଲାଗିଲେ ।

ଯୁବନାଶ୍ବଙ୍କ ଆକୁଳତା ଦେଖି, ଗରୁଡ଼ କହିଲା, ମୁଁ ପରା ଗରୁଡ଼ । ତୁମେ କାହାକୁ ଭୟ କରୁଛ ? ମୁଁ ରାକ୍ଷସର ପିଶାଚୁଣୀ ଦେବୀଙ୍କୁ ମାରି ପାରିବି—ହେଇ ଦେଖ ମୋର ରୂପ ।

ଗରୁଡ଼ ତା ନିଜ ରୂପ ଧାରଣ କରି ଛିଡ଼ା ହେଲା ।

ଯୁବନାଶ୍ବ ଭାବିଲେ ରାକ୍ଷସ ବଡ଼ ମାୟାବୀ—ଏ ବି ରାକ୍ଷସର ଏକ ମାୟା ।

ଗରୁଡ଼ ଜାଣିପାରିଲା ଯୁବନାଶ୍ବ ତାକୁ ବିଶ୍ୱାସ କରୁନାହାନ୍ତି । ସେ ଠିକେ ଠିକେ ସବୁ କହି ମରି ପଡ଼ିଥିବା ହରିଣାକ୍ଷୀଦେବୀଙ୍କୁ ଦେଖାଇଲେ ।

ଏଥର ଯୁବନାଶ୍ବ ବିଶ୍ୱାସ ନକରି ରହିପାରିଲେ ନାହିଁ ।

ହଠାତ୍ ଶୂନ୍ୟମାର୍ଗରୁ ଶୁଣାଗଲା ଭୟଙ୍କର ଶବ୍ଦ । ଦେବ—ଗନ୍ଧର୍ବାଙ୍କ ରେ ରେ କାର ଧ୍ୱନି ସହିତ ଅଶ୍ୱ, ଗଜଙ୍କ ସ୍ୱର ଏବଂ ବିଭିନ୍ନ ରଣବାଦ୍ୟ ସ୍ୱର ଏକତ୍ରିତ ହୋଇ ଏକ ଭୟଙ୍କର ସ୍ୱର ଶୂନ୍ୟରୁ ମର୍ତ୍ତ୍ୟଲୋକରେ ଅଜାଡ଼ି ହୋଇ ପଡ଼ିଲା ।

ରାକ୍ଷସମାନେ ସଜ ହେଲେ ଯୁଦ୍ଧପାଇଁ । ନବଲକ୍ଷ ବଳ ହିରଣ୍ୟକପଟରେ । ଗର୍ଜି ଉଠିଲେ ସମସ୍ତେ । କଡ଼ା, ଘୁମୁରା, ଡାଉଁଣ୍ଡି ବଜାଇ ବାହାର ହେଲେ ଦୈତ୍ୟବଳ ଦେବ ସେନାଙ୍କର ସମ୍ମୁଖୀନ ହେବାପାଇଁ । କାଦେମ୍ବରୀ ରସ ପାନ କରି ଖେମଟା ନାଚ ନାଚି ଦଳେ ଧର ଧର ମାର ମାର କହି ଧାଇଁଲେ । ପୁଣି ଦଳେ କୁରୁଳି ବୋବାଳି ଦେଇ ଧାଇଁଲେ । ପ୍ରତ୍ୟେକଙ୍କ ମୁଣ୍ଡରେ ରକ୍ତଚନ୍ଦନ, ଗଳାରେ ମନ୍ଦାର ମାଳ । କଳକଳା ନାଦ କରି ପଞ୍ଝାକୁ ପଂକ୍ତି ଛୁଟିଛନ୍ତି ।

ଗରୁଡ଼କୁ ହିରଣ୍ୟପୁର ପଠାଇ ଶ୍ରୀକୃଷ୍ଣ ଅନ୍ୟାନ୍ୟ ପାଣ୍ଡବଙ୍କ ସହିତ ବ୍ୟାସଙ୍କୁ ଧରି ଚାଲିଲେ ସ୍ୱର୍ଗଭୁବନ । ଶ୍ରୀକୃଷ୍ଣଙ୍କଠାରୁ ଅର୍ଜୁନ ସେତେବେଳେ ବଡ଼ ଭାଇଙ୍କ ଦୁର୍ଦ୍ଦଶା ଶୁଣିଲେ ସେତେବେଳେ ଆଉ ଦଣ୍ଡେ ସ୍ୱର୍ଗରେ ନ ରହି ଦୈତ୍ୟପୁରକୁ ଆସିବାକୁ ପ୍ରସ୍ତୁତ ହେଲେ । ଯୁଧିଷ୍ଠିରଙ୍କ କଥା ଶୁଣି ଇନ୍ଦ୍ର ଦେବ-ସେନା ପ୍ରସ୍ତୁତ ହେବା ପାଇଁ ଆଦେଶ ଦେଲେ । ଛୁଟିଲେ ଦେବ ଗନ୍ଧର୍ବ ହିରଣ୍ୟପୁରକୁ ।

ଗରୁଡ଼ ଯୁଧିଷ୍ଠିରଙ୍କୁ କହିଲା, ଅସୁରମାନେ ସମସ୍ତେ ଯୁଦ୍ଧକୁ ଗଲେଣି, ଚାଲ ଆମେ ଇନ୍ଦ୍ର, ଗୋବିନ୍ଦଙ୍କୁ ଭେଟିବା । ଧର୍ମନନ୍ଦନ ଯୁଧିଷ୍ଠିର ଗରୁଡ଼ ଉପରେ ବିଜେ କଲେ ।

ପକ୍ଷୀରାଜ ତା ପକ୍ଷ ବାତ ଘାତରେ ଦେଉଳ ଭାଙ୍ଗି ବାହାର ହେଲା ।

ରାକ୍ଷସପୁର ବଡ଼ ସୁନ୍ଦର । ତା ରାଜ୍ୟର ସ୍ତ୍ରୀମାନେ ମଧ୍ୟ ବଡ଼ ସୁନ୍ଦରୀ । ସେମାନେ ବାହାରକୁ ଆସି ଉଚ୍ଚା ଅଟ୍ଟାଳିମାନଙ୍କରେ ଛିଡ଼ା ହୋଇ ଦେବବଳକୁ ରାକ୍ଷସବଳ କପରି କବଳିତ କରୁଛନ୍ତି ତାହା ଦେଖିବାକୁ ଆକାଶ ମାର୍ଗକୁ ଅନାଇଛନ୍ତି ।

ଗରୁଡ଼ ଆକାଶ ମାର୍ଗକୁ ଉଡ଼ିଯିବା ବେଳେ ତା ଚଞ୍ଚୁଘାତରେ ବହୁ ସୁନ୍ଦରୀ ନାରୀଙ୍କ ମୁଖ ଦେହ ବିଦାରିତ କଲା । ସେମାନେ ଲଜ୍ଜାରେ ଛିନ୍ନ ଛିନ୍ନ ହୋଇ ପଳାଇ ଯିବାବେଳେ ଗରୁଡ଼ର ପକ୍ଷ ବାତରେ ସୃଷ୍ଟି ହେଉଥିବା ବାତ୍ୟାରେ କବଳିତ ହୋଇ ଗୋଟି, କେଞ୍ଚି , କାଣି ହୋଇଗଲେ ।

ଗରୁଡ଼ ପକ୍ଷ ଘାତରେ ଜଗତ ଅନ୍ଧାର ଲାଗିଗଲା । ସେ ତା ପକ୍ଷ ହଲାଇ ହଲାଇ ବାତ୍ୟା ସୃଷ୍ଟି କରି ଉଡ଼ିଗଲା ଶ୍ରୀକୃଷ୍ଣଙ୍କ ନିକଟକୁ ।

ସେତେବେଳକୁ ଅର୍ଜ୍ଜୁନ ଶରାଘାତରେ ରାକ୍ଷସଦଳଙ୍କୁ ନିଶ୍ଚିହ୍ନ କରିପକାଉ ଥାନ୍ତି । ରାକ୍ଷସମାନେ ନିଜକୁ ରକ୍ଷା କରିବା ପାଇଁ କିଏ କେଉଁଆଡ଼େ ପଳାଇ ଯାଉଥାନ୍ତି । ଦୂରରୁ ଭାସି ଆସୁଥାଏ ପାଞ୍ଚଜନ୍ୟ ଶଙ୍ଖର ଅପୂର୍ବ ସ୍ୱର । ସେ ସ୍ୱର ଶ୍ରବଣ କରି ଦେବସେନାର ଯେଉଁଭଳି ବଳବୀର୍ଯ୍ୟ ବର୍ଦ୍ଧିତ ହେଉଥାଏ ସେହିଭଳି ରାକ୍ଷସମାନେ ତାହା ଶୁଣି ହତବୀର୍ଯ୍ୟ ହୋଇ ପଡ଼ୁଥାନ୍ତି ।

ସୁଦେଷ୍ଣଙ୍କ କର୍ଣ୍ଣରେ ସେହି ଶଙ୍ଖ ଧ୍ୱନି ପ୍ରବେଶ କଲାମାତ୍ରେ ସେ ହାତ ଦୁଇଟିକୁ ଯୋଡ଼ି ପ୍ରଣତି ଜଣାଇଲେ ।

ସେତେବେଳେ ଭଗବାନ କୃଷ୍ଣଙ୍କ ମୁହଁରେ ହସ ଫୁଟି ଉଠୁଥିଲା ।



# ଚଣ୍ଡମୂର୍ତ୍ତି

ମହିଷାସୁରର ସେନାପତି ଚଣ୍ଡ ଓ ମୁଣ୍ଡ ।

ଅପ୍ରମିତ ଶକ୍ତିର ଅଧିକାରୀ ସେ ଦୁହେଁ ଦେବ ଦେବ ମହାଦେବଙ୍କ ବରରେ ସେ ଦୁହେଁ ବଳୀୟାନ । ତାଙ୍କ ବଳ ସହିତ ସ୍ୱୟଂ ମହିଷାସୁରର ବଳବୀର୍ଯ୍ୟ ମଧ୍ୟ ସମାନ ନୁହେଁ । ଦୁହେଁ ଅତି ଉଦାର ହେତୁ ଅପ୍ରମିତ ବଳର ଅଧିକାରୀ ହୋଇ ମଧ୍ୟ ମହିଷାର ସେନାପତି ହେବାରେ ଦ୍ୱିଧା ପ୍ରକାଶ କରି ନାହାନ୍ତି । ମହିଷାସୁର ମଧ୍ୟ ସେନାପତି ଭଳି ତାଙ୍କୁ ଭାବେ ନାହିଁ ।

କୁଶଦ୍ୱୀପର ରାଜା ପ୍ରଚଣ୍ଡାସୁର । ସେ ମହାବଳବନ୍ତ ଶିବଙ୍କ ବରରେ । ଦୁର୍ଯୋଗ ହେଉ ବା ସୁଯୋଗ ହେଉ, ସେ ଦିନ ମହିଷାସୁର ଦିଗ୍‌ବିଜୟ କରିବା ଉଦ୍ଦେଶ୍ୟରେ କୁଶ-ଦ୍ୱୀପରେ ପ୍ରବେଶ କଲା । ସଙ୍ଗରେ ଥାନ୍ତି ଅଶୀଖର୍ବ ଯୋଦ୍ଧା । କୁନ୍ତ, ଖଡ୍ଗ, ଶାବେଳ, ଛେଲ, ଚନ୍ଦ ଅର୍ଦ୍ଧ ଚନ୍ଦ୍ରନ ଅସ୍ତ୍ର ଶସ୍ତ୍ରରେ ତା'ର ସୈନ୍ୟ-ମାନେ ସୁସଜ୍ଜିତ । ମହିଷାର ନାମ ଶୁଣିଲା ମାତ୍ରେ ରାଜନ୍ୟମଣ୍ଡଳୀ ଭୀତତ୍ରସ୍ତ । ବ୍ରହ୍ମାଙ୍କର ବଳରେ ଯେ ବଳୀୟାନ, ତା'ର ଶକ୍ତିକୁ ରୋଧ କରିବ କିଏ ?

ମହାମନ୍ତ୍ରୀ ଶିବପାଦ ପ୍ରଚଣ୍ଡାସୁରକୁ ଜଣାଇଲେ-ହେ ମଣିମା, ତୋ ରାଜ୍ୟକୁ ମହିଷା ଆକ୍ରମଣ କରିଛି । ବେଦବର ଅମର ବର ଦେଇଥିବା ହେତୁ ସେ ସମରରେ ଦୁର୍ଜୟ ଏ ମହୀରେ ତା'ର ସମକକ୍ଷ ଯୋଦ୍ଧା କେହି ନାହାନ୍ତି । ତେଣୁ ବିନା ଯୁଦ୍ଧରେ ବୀର ମହାବୀରମାନେ ତା'ର ବଶ୍ୟତା ସ୍ୱୀକାର କରୁଛନ୍ତି । ବର୍ତ୍ତମାନ ସେ ମହାନଦୀ କୂଳରେ ଥିବା କରୁଣାକର ବଟମୂଳେ ସୈନ୍ୟ ବଳ ଧରି ରହିଛି । ଆଦେଶ ହେଲେ ତା ସହିତ ବଳ ପରୀକ୍ଷା କରିବାକୁ ଯୁଦ୍ଧ କରିବା, ଅଥବା ବୃଥା ବଳ କ୍ଷୟ ନ କରି ସନ୍ଧି କରିବା । ସମୟ ନଷ୍ଟ ନ କରି ଶୀଘ୍ର ସିଦ୍ଧାନ୍ତରେ ଉପନୀତ ହେବାକୁ ହେବ ।

ଦୀର୍ଘ କେତେ ବର୍ଷ ଧରି ପ୍ରଚଣ୍ଡାସୁର ନିଷ୍କଣ୍ଟକ ଭାବେ ରାଜୁତି କରିଆସିଛି । କେହି କେବେ ସାହାସ କରି ନାହିଁ ତା ରାଜ୍ୟର ସୀମା ସ୍ପର୍ଶ କରିବାକୁ । କିନ୍ତୁ

ଆଜି ମହିଷାସୁର ଆସିଛୁ । ମେ ପୁଣି ବ୍ରହ୍ମାଙ୍କଠାରୁ ଅମର ବର ପାଇଛୁ; କ'ଣ କରିପାଇ ପାରିବ, ରାଜା ପ୍ରଚଣ୍ଡାସୁର କିଛି ସ୍ଥିର କରି ପାରିଲେ ନାହିଁ । ମହାମନ୍ତ୍ରୀଙ୍କ ମତ ତାଙ୍କର ମତ ବୋଲି ଜଣାଇ ଦେଲେ ।

ମହାମନ୍ତ୍ରୀ କହିଲେ, ମୁଁ ପ୍ରଥମେ ଯାଇ ତାଙ୍କୁ ସାକ୍ଷାତ କରିବି । ଯଦି ଜାଣିବି ସେ ଆମ ସହିତ ମିତ୍ରତା ସ୍ଥାପନ କରିବାକୁ ଚାହେଁ, ତେବେ ତା ସହିତ ସୁସମ୍ପର୍କ ସ୍ଥାପନ କରିବା । ନ ହେଲେ ଦୁଷ୍ଟ ପ୍ରକୃତିର ଉପଯୁକ୍ତ ବ୍ୟବସ୍ଥା କରାଯିବ ।

ମହାମନ୍ତ୍ରୀଙ୍କ କଥାରେ ସମ୍ମତି ପ୍ରଦାନ କଲେ ରାଜା ପ୍ରଚଣ୍ଡାସୁର ।

ଉପହାରମାନ ଧରି ମନ୍ତ୍ରୀ ଶିବପାଦ ଗଲେ ମହିଷାସୁର ନିକଟକୁ । ଆଗୁଆଣି ଥିଲେ ସେନାପତି ଦୁମର ବେମାଳ । ଉପହାର ସହ କୃଶଦ୍ୱୀପର ମନ୍ତ୍ରୀକୁ ଦେଖି ସେମାନେ ମହିଷାସୁର ନିକଟକୁ ତାଙ୍କୁ ନେଇଗଲେ ।

ପ୍ରଥମେ ଦୁମର ବେମାଳ ମହିଷାକୁ ମନ୍ତ୍ରୀ ଶିବପାଦଙ୍କ ପ୍ରତି ଉପହାର ଧରି ଆସିଥିବା କଥା ଜଣାଇଲେ । ମହିଷା ଅନୁମତି ଦେଲା କୃଶଦ୍ୱୀପ ମହାମନ୍ତ୍ରୀକୁ ସାକ୍ଷାତ କରିବାକୁ ।

ବନ୍ଦନା ଉପହାର ସହିତ କୃତାଞ୍ଜଳିପୂର୍ବକରେ ମହାମନ୍ତ୍ରୀ ମହିଷାକୁ ଭେଟିଲେ ।

ସେ ବଧି ପୂର୍ବକ ସମ୍ମାନ ପ୍ରଦର୍ଶନ କରି କହିଲେ, ହେ ଦେବ—ବୀରାଧି-ବୀରବର ପ୍ରତାପୀ ମହିମଣ୍ଡଳ ଅଧୀଶ୍ୱର ଆଜଠାରୁ ପ୍ରଚଣ୍ଡାସୁର ବଶ୍ୟତା ସ୍ୱୀକାର କଲେ । ତୁ ଯେ ଭଳି ବ୍ରହ୍ମାଙ୍କର ଶିଷ୍ୟ, ସେ ସେହି ଭଳି ଶିବଙ୍କର ଶିଷ୍ୟ । ଦୁଇ ମହାବୀରଙ୍କ ମିଳନରେ ବିଶ୍ୱରେ ନୂତନ ଯୁଗର ସୃଷ୍ଟି ହେଉ ! ବିଶ୍ୱ ଶ୍ରୀ ମଣ୍ଡିତ ହେଉ !!

ଘୂର୍ଣ୍ଣନ୍ତ ନେତ୍ରରେ ଅସୁରରାଜ ମହାମନ୍ତ୍ରୀ ଶିବପାଦଙ୍କ ଆପାଦ ମସ୍ତକ ନିରୀକ୍ଷଣ କରି କହିଲେ "ମନ୍ତ୍ରୀ, ତୁମ ରାଜାଙ୍କ ନିକଟକୁ ଫେରିଯାଇ ଜଣାଅ,

ମୋର ସେନାପତି କାନ୍ତମାଳା ଯାହାର ବୀରତ୍ୱରେ ସମଗ୍ର ସିଂହଳ ଆଜି ବି ସ୍ତମ୍ଭୀଭୂତ, ସେ ତା'ର ସୈନ୍ୟବଳ ଧରି ମୋର ବଶ୍ୟତା ସ୍ୱୀକାର କରିବା ହେତୁ ମୁଁ ତାଙ୍କୁ ମୋର ପ୍ରଧାନ ସେନାପତି ଭାବେ ନିଯୁକ୍ତ କଲି । ଶୁଣିଛି ତୁମ୍ଭ ରାଜା ପ୍ରଚଣ୍ଡାସୁରର ଦୁଇ ପୁତ୍ର ଅଛନ୍ତି । ଯଦି ସେ ମୋ ସହିତ ପ୍ରୀତି ଭାଜନ ହେବାର ଇଚ୍ଛାଥାଏ, ତେବେ ସେ ଦୁଇ ପୁତ୍ରଙ୍କୁ ମୋ ନିକଟରେ ସମର୍ପଣ କରୁ । ଯଦି ସେ ତାହା ନ କରେ ତାହା ହେଲେ ସମର ଅନିବାର୍ଯ୍ୟ । ଯୁଦ୍ଧରେ ତା'ର ସମସ୍ତ ସୈନ୍ୟବଳ ନଷ୍ଟ କରି ତା ଦେଶକୁ ଉଜାଡ଼ ଦେବ । ଯୋଦ୍ଧା ମହାଯୋଦ୍ଧାଙ୍କ ମାଂସ କାଟି ପକାଇବ ।''

ଓଠରେ ଦନ୍ତ ଚାପି ତା'ର ବୀରତ୍ୱ ଦେଖାଇ ବହୁ ପ୍ରତିଜ୍ଞା କରୁ କରୁ ସେ ପ୍ରଚଣ୍ଡ ହୋଇଉଠିଲା । ନେତ୍ର ଯୁଗଳରୁ ତା'ର ସ୍ଫୁଲିଙ୍ଗ ବୃଷ୍ଟି ହେବାକୁ ଲାଗିଲା । ଫୁଲି ଗଲା ନାସିକାର ପୁଡ଼ା ଦୁଇଟି । ବସିଥିବା ଜାଗାରୁ ଉପରୁ ଡେଇଁପଡ଼ି ବୀର ଦର୍ପରେ ନାଚିଗଲା ସେ କିଛି ସମୟ ପାଇଁ । ତା'ର କଣ୍ଠ ସହିତ ନିଶ୍ୱାସ ପ୍ରଶ୍ୱାସର ସ୍ୱର ଓ ତା ଦର୍ପିତ ପଦଧ୍ୱନି ମିଳିତ ହୋଇ ଏକ ଭୟଙ୍କର ଶବ୍ଦ ଜାତ ହେଲା । ମହାମନ୍ତ୍ରୀ ଶିବପାଦ ମହାଷାକୁ ଆଉ ଅଧିକ କ୍ଷଣ ଦୃଷ୍ଟିପାତ କରି ପାରିଲେ ନାହିଁ । ମଥାନତ କରି ବାରମ୍ବାର ତାଙ୍କୁ ପ୍ରମାଣ ଜଣାଇ ଜଣାଇ ସେଠାରୁ ଚାଲିଗଲେ ।

ବେଶି ବେଳ ଲାଗିଲା ନାହିଁ ମହାରାଜ ପ୍ରଚଣ୍ଡାସୁରକୁ ଭେଟିବା ପାଇଁ । ମହାମନ୍ତ୍ରୀ ଶିବପାଦ ମହାଷାର ଦର୍ପିତ କଥାବାର୍ତ୍ତା ଚାଲିଚଳନରେ ଭୀତତ୍ରସ୍ତ । ସେ ଯେଉଁ ଭଳି ମହାଷାକୁ ଦେଖି ଆସିଥିଲେ, ସେହି କଥା ରାଜାଙ୍କ ସମ୍ମୁଖରେ ବ୍ୟକ୍ତ କରି କହିଲେ, ମହାଷାସୁର ଯେତେବେଳେ କଥା କହୁ କହୁ କ୍ରୋଧାନ୍ୱିତ ହୋଇ ଉଠିଲା, ସେତେବେଳେ ତା ପାଦ ଭରରେ ମେଦିନୀ ପ୍ରକମ୍ପିତ ହେବାକୁ ଲାଗିଲା । ତା'ର ନିଃଶ୍ୱାସ ପ୍ରଶ୍ୱାସରେ କରୁଣାକର ବଟର ପତ୍ର ଶାଖା ପ୍ରଶାଖା ଆନ୍ଦୋଳିତ ହେବାକୁ ଲାଗିଲା । ସେ କହିଲା, ଯଦି ଚଣ୍ଡମୁଣ୍ଡଙ୍କୁ ତା' ପାଖରେ ସମର୍ପଣ କରା ନଯାଏ, ତେବେ ସେ ଦେଶ ଉଜାଡ଼ ଦେବ—ସୈନ୍ୟବଳଙ୍କ ମାଂସ କାଟି ପକାଇବ ।

"ମାଏଁସ କାଟି ପକାଇବ...... ।" ଚକ୍କାର କରି ଉଠିଲା ନିଶୂଳଧାରୀ ମହାଦେବଙ୍କ ଶିଷ୍ୟ ପ୍ରଚଣ୍ଡାସୁର । ବିଭୂତି ବିଲେପିତ ମୁଖ ମଣ୍ଡଳ ତା'ର ଭୟଙ୍କରରୁ ଭୟଙ୍କର ହୋଇ ଉଠିଲା । ଉଚ୍ଚ ସ୍ୱରରେ ସେ ଡାକ ଦେଲା, "ଆଜ ମୋର ସମଦଣ୍ଡ ।"

ସାଜ ସାଜ ରାଜ୍ୟସାକ ଚହଲ ପଡ଼ିଗଲା । ନଗରୀର ଚତୁର୍ଦ୍ଦିଗରେ ବାଜି ଉଠିଲା ଶିଙ୍ଗା ଡମ୍ବରୁ, ନିଶୂଳ ଶକ୍ତି ଧରି କୁହାଟମାନ ଦେଇ ଧାଇଁଲେ ବୀରମାନେ ରାଜନର ପାଖରେ ଏକତ୍ରିତ ହେବାକୁ । ପ୍ରତ୍ୟେକଙ୍କ ଶରୀରରେ ଭସ୍ମ ବିଲେପନ ହୋଇଛି । ପ୍ରତ୍ୟେକ ଏକ ଏକ ବୃଷଭ ଆରୋହଣ କରିଛନ୍ତି । ସାକ୍ଷାତ ଶିବଙ୍କର ଗୋଟିଏ ଗୋଟିଏ ଅବତାର । ସତେ ଯେପରି କୈଳାସର ଦୁର୍ଦ୍ଦିନରେ ଶିବାନୁଚର କୋପରେ ପ୍ରଜ୍ୱଳିତ ।

ଯୋଦ୍ଧୃବେଶରେ ବହିର୍ଗତ ହେଲା ପ୍ରଚଣ୍ଡାସୁର । ଚଣ୍ଡ ମୁଣ୍ଡ ବେନି ଭାଇ ତାକୁ କଉତ୍କାଳ ହୋଇ କହିଲେ, "ଆମ୍ଭେ ଥାଉ ଥାଉ ତୁମ୍ଭେ ଯୁଦ୍ଧକୁ ଯିବା ଉଚିତ ନୁହେଁ ।"

ପ୍ରଚଣ୍ଡାସୁର ପୁତ୍ରଙ୍କୁ ପ୍ରବୋଧନା ଦେଇ କହିଲା, ଏହି ଛାର ମହିଷାସୁରକୁ କି ବା ଡର । ତା'ର ଆରାଧ୍ୟ ବ୍ରହ୍ମାର ଏହି ଭଳି ଭାବ ଦେଖି ଶିବ ଖୁଣ୍ଟପୋଡ଼େକରେ ଗଣ୍ଡିରୁ ମୁଣ୍ଡ ଅଲଗା କରି ଦେଇଥିଲେ । ତୁମ୍ଭେମାନେ ଯେତେହେଲେ ପିଲା । ଘରେ ତୁମ୍ଭେମାନେ ନିଶ୍ଚିନ୍ତରେ ରୁହ । ଏହିକ୍ଷଣି ମୁଁ ମହିଷାକୁ ଉପଯୁକ୍ତ ଶାସ୍ତି ଦେଇ ଫେରିବି ।

ଯୁଦ୍ଧ ବାଦ୍ୟରେ ମୁଖରିତ କରି ପ୍ରଚଣ୍ଡାସୁରର ସୈନ୍ୟବଳ ଛୁଟିଲେ ମହାନଦୀ କୂଳର କରୁଣାକର ବଟ ଆଡ଼େ । ସୈନ୍ୟ, ସେନାପତି ଏବଂ ସେମାନଙ୍କ ବାହାନ ବୃଷଭଙ୍କ ମୁଖରବ ଫଳରେ ଉଚ୍ଛୁଳି ଉଠିଲା ପଥପ୍ରାନ୍ତର ।

ଦୂରରୁ ସୈନ୍ୟବଳ ଦେଖି ସେନାପତି କାନ୍ତମାଳା ମହିଷାସୁରକୁ ପ୍ରଚଣ୍ଡାସୁରର ଯୁଦ୍ଧ ଆଗମନ ବାର୍ତ୍ତା ଜଣାଇଲା । ତତ୍‌କ୍ଷଣାତ୍ ମହିଷା ଗୃହରେ

ବେମାଳଙ୍କୁ ଆଦେଶ ଦେଲା ପ୍ରଚଣ୍ଡାର ସୈନ୍ୟବଳ ଓଗାଳିବାକୁ ଏବଂ ନିଜେ ଅନ୍ତରୀକ୍ଷରେ ଛୁଟିଲା କୁଶଦ୍ୱୀପ ଆଡ଼େ । ସେତେବେଳେ ଚଣ୍ଡ ମୁଣ୍ଡ ମହିଷାସୁରର ସୈନ୍ୟଙ୍କ ସହିତ ଚାଲି କୀଡ଼ାରତ ।

ମହିଷାସୁରର ସୈନ୍ୟବଳ ଦେଖି ଚଣ୍ଡ ମୁଣ୍ଡ କୋପାନ୍ୱିତ । ସଙ୍ଗେ ସଙ୍ଗେ ଏକ ଏକ ଗଦାଧରି ଦୁହେଁ ଛୁଟିଲେ ମହିଷାର ସୈନ୍ୟବାହିନୀ ଆଡ଼େ । ସଙ୍ଗରେ ତାଙ୍କର ଦୁଇ ଅର୍ବୁଦ ନଗରରକ୍ଷୀ । ଦୁଇଭାଇ ଯୁଦ୍ଧରେ ଦୁର୍ଜେୟ । ଗଦାଘାତରେ ମହିଷାର ସୈନ୍ୟ ଚୂର୍ଣ୍ଣୀଭୂତ ହୋଇଗଲେ । ନିର୍ଭୟ ଚିତ୍ତରେ ଖଣ୍ଡିଆ ଭଳି ଦୁହେଁ ଖେଦି ଧରାଶାୟୀ କରି ଦେଲେ ମହିଷାର ସୈନ୍ୟଙ୍କୁ । ଛେଳିପଲଙ୍କୁ ବାଘ ମାଇଲା ଭଳି, ଚଣ୍ଡ ମୁଣ୍ଡ ମହିଷାର ସୈନ୍ୟଙ୍କୁ ମାରିବା ଦେଖି ନିଜେ ମହିଷା ଉଠିଲା ଧନୁଶର ଧରି । ଶର ବୃଷ୍ଟି କରି ରୁନ୍ଧିଦେଲା ଚଣ୍ଡ ମୁଣ୍ଡଙ୍କ ଆସିବା ପଥ । ମାତ୍ର ଚଣ୍ଡ ମୁଣ୍ଡ ଶିବଙ୍କ ବରରେ ବଳୀୟାନ । ମହିଷାର ଶରଗୁଡ଼ିକୁ କାଞ୍ଚ ମାତ୍ରକେ ଆଡ଼େଇ ଦେଇ ଛୁଟି ଚାଲିଲେ ମହିଷା ଆଡ଼େ । ତାଙ୍କ ଆଗରେ ମହିଷାର ଯେତେ ସୈନ୍ୟ ପଡ଼ିଲେ ସମସ୍ତଙ୍କୁ ପିଟି ନିପାତ କରିଦେଲେ ।

ଅବଶେଷରେ ମହିଷା ଚଣ୍ଡ ମୁଣ୍ଡଙ୍କ ସହିତ ଯୁଦ୍ଧ କରି ପାରିଲା ନାହିଁ । ଭଗ୍ନ ବଳ ଧରି ସେ ପଳାଇଲା । ସମର କ୍ଷେତ୍ରରେ କାନ୍ତିମାଳା ପ୍ରଚଣ୍ଡାସୁର ସହିତ ଯୁଦ୍ଧରେ ବ୍ୟସ୍ତ । ଏହି ସମୟରେ ମହିଷାସୁର ଚଣ୍ଡ ମୁଣ୍ଡଙ୍କ ଅପ୍ରମିତ ଯୁଦ୍ଧକଥା ଜଣାଇ ସନ୍ଧି ପାଇଁ ବ୍ୟବସ୍ଥା କରିବାକୁ କହିଲା ।

ରାଜା ଏବଂ ପ୍ରଧାନ ସେନାଧ୍ୟକ୍ଷଙ୍କ ଆଦେଶରେ ମୁହୂର୍ତ୍ତକ ମଧ୍ୟରେ ପ୍ରତ୍ୟେକ ନିରସ୍ତ୍ର ହେଲେ । ମହିଷାସୁର ପରାଜିତଙ୍କ ଭଳି ମୁଖନତ ଓ ଊର୍ଦ୍ଧ୍ୱବାହୁ ହୋଇ ପାଦଗଡରେ ପ୍ରଚଣ୍ଡାସୁର ନିକଟକୁ ଚାଲିଲା । ପଛରେ ତା'ର ନିରସ୍ତ୍ର ସେନା ଓ ସେନାପତି ।

କ୍ଷଣକ ପୂର୍ବରୁ ଯେଉଁଠି ଉଠୁଥିଲା ଅସ୍ତ୍ରର ଝଙ୍କାର, ହସ୍ତୀଙ୍କ ବୃଂହିତ, ଅଶ୍ୱଙ୍କ ହେ୍ରଷାରବ, ଶାର୍ଦ୍ଦୂଳଙ୍କ ଗର୍ଜ୍ଜନ, ବୃଷଭଙ୍କ ହମ୍ବାଧ୍ୱନି, ଅସ୍ତ୍ରପୀଡ଼ିତ

ମୁମୂର୍ଷୁର ଆର୍ତ୍ତ ଚତ୍କାର ଆଦ, ସେହ ସ୍ଥାନ ହଠାତ୍ ନୀରବ, ନିଃଶବ୍ଦ ହୋଇ ପଡ଼ିଲା ।

ଊର୍ଦ୍ଧ୍ୱମୁଖ ଗର୍ବିତ ମହିଷାସୁରର ସେ ଉଦ୍ଧତ ପଣରେ ଆଉ ଟିକିଏ ମାତ୍ର ଚିହ୍ନ ବର୍ତ୍ତି ନାହିଁ । ବ୍ରହ୍ମାଙ୍କର ଅମରବର ପ୍ରାପ୍ତ ମାନବ ଦେହରେ ମହିଷର ମୁଣ୍ଡଯୁକ୍ତ ମହାବୀର ଗ୍ଡଲିଛି ମୁଖ ନତ କରି । ଏଠାରେ ଧର୍ମ, ଧର୍ମ ପାଖରେ ହାରି ମାନି ନାହିଁ; ବୀର ବୀରତ୍ୱ ପାଖରେ ହାରି ମାନିଛି ।

ଏହା ଫଳରେ ମହିଷର ବୀରତ୍ୱ ଉପରେ ଆଞ୍ଚ ଆସିଛି ସତ୍ୟ, କିନ୍ତୁ ତା'ର କୌଶଳ ତାକୁ ପୁଣି ଟାଣି ନେଇଛି ପରାଜିତ ମଧ୍ୟରେ ତାର ମୂଳ ଇଚ୍ଛାର ପୂରଣ ପାଇଁ ।

ମହାମନ୍ତ୍ରୀ ଶିବପାଦ ରାଜା ପ୍ରଚଣ୍ଡାସୁରଙ୍କୁ ଜଣାଇଲେ, ଦେବ ମହିମା ସବୁ ସମ୍ପଦ ବର୍ତ୍ତମାନ ତୋ ପଦାଗତ । ସ୍ୱୟଂ ମହିଷାସୁର ନିରସ୍ତ୍ର ହୋଇ ସନ୍ଧି ପାଇଁ ଆସିଛି । ଏଠାରେ ଯୁଦ୍ଧ ଆଉ ଉଚିତ ନୁହେଁ । ପରାଜିତ ଶତ୍ରୁ ପ୍ରତି ଉଚିତ ବ୍ୟବହାର ବୀରର କର୍ତ୍ତବ୍ୟ ।

ସନ୍ଧି ହେଲା ଉଭୟଙ୍କ ମଧ୍ୟରେ । ଲେଖାରେ ମହିଷାସୁର ପ୍ରଚଣ୍ଡାର ନାତି । ଅଜ୍ଞା ନାତିଙ୍କ ମଧ୍ୟରେ ସୁସମ୍ପର୍କ ଗଢ଼ି ଉଠିଲା । ପରାଜିତ ଶତ୍ରୁ ହେଲେ ମଧ୍ୟ ଅବାଧ ନାତିକୁ ଅଜ୍ଞା କୋଳରେ ଧରି ନିଜ ରାଜ୍ୟରେ ବଡେଇ କଲେ ।

ପାଞ୍ଚଦିନ ମହିଷା କ୍ଷଣଦ୍ୱୀପରେ ରହିଲା । ଗଲାବେଳେ ପ୍ରୀତିର ଚିହ୍ନ ସ୍ୱରୂପ ଚଣ୍ଡ ମୁଣ୍ଡଙ୍କୁ ସେ ମାଗିନେଲା ପ୍ରଚଣ୍ଡାଠାରୁ ମିନତି କରି ।

ଦୀର୍ଘଦିନ ଅତିତ ହୋଇଛି । ଚଣ୍ଡମୁଣ୍ଡଙ୍କ ବାହୁବଳରେ ମହିଷା କେବଳ ଧରାତଳ ନୁହେଁ ଦେବାଦେବୀଙ୍କ ବାସସ୍ଥଳୀ ସ୍ୱର୍ଗ ମଧ୍ୟ ଅଧିକାର କରିପାରିଛି ।

କିନ୍ତୁ ସେ ଏକ ଦୁର୍ଦ୍ଦିନ । ସେଦିନ ସେମାନେ ଚିହ୍ନି ପାରିଲେ ନାହିଁ ନିଜର ଆରାଧ୍ୟକୁ ।

ମୃଗୟା ବିନୋଦରେ ଦୁଇଭାଇ ବଣ ଜଙ୍ଗଲରେ ବୁଲି ପାରିଧି କରି ଲକ୍ଷ୍ମୀ-ଭଦ୍ରା ନଦୀକୁ ସ୍ନାନ ନିମିତ୍ତ ଆସିଗଲେ । ଅତି ସୁଶୀତଳ ଲକ୍ଷ୍ମୀଭଦ୍ରା ନଦୀର ଜଳ । ଦୁହେଁ ମନଇଚ୍ଛା ସ୍ନାନ ରତ । ହଠାତ୍ ତାଙ୍କ ନାସିକା ସ୍ପର୍ଶ କଲା ଏକ ମନୋରମ ସୁଗନ୍ଧ । ସେ ଗନ୍ଧର ଆମୋଦରେ ଦୁଇ ଭାଇ ଚକିତ ହେଲେ । ଏତେ ମାଦକ ଗନ୍ଧ ସେ କେବେ ଆଘ୍ରାଣ କରି ନାହାନ୍ତି ।

ତାଙ୍କ ଦୃଷ୍ଟି ପଥାରୂଢ଼ ହେଲା ଏକ ହେମପଦ୍ମ । ନଦୀ ଜଳରେ ନାଚି ନାଚି ସେ ଭାସି ଯାଉଛି । ଅପୂର୍ବ ହେମପଦ୍ମ ହେଲେ ମଧ୍ୟ ଚକ୍ଷୁ ସମ୍ମୁଖରେ ଯେତେବେଳେ ସମ୍ଭବ ହୋଇ ପାରିଛି, ସେତେବେଳେ ସ୍ୱାଧୀନ ଭାବରେ ତାକୁ ଭାସିଯିବାକୁ ଦେବେ କିପରି ? ଧାଇଁଲେ ଦୁଇଭାଇ ହେମପଦ୍ମ ପଛେ ପଛେ । ମାତ୍ର ଆଶ୍ଚର୍ଯ୍ୟର କଥା, ଏମାନେ ଯେତିକି ବେଗରେ ତା ପଛରେ ଧାଇଁଲେ ତାଠାରୁ ଅଧିକ ବେଗରେ ହେମପଦ୍ମ ଭାସି ଚାଲିଲା ନଦୀ ଜଳରେ । ଧାଇଁ ଧାଇଁ ଦୁଇଭାଇ କ୍ଳାନ୍ତ ହୋଇ ପଡ଼ିଲେ ।

ନଦୀ କୂଳରେ କଣ୍ୟୁଗିରି ସାଧକର ସାଧନା ଭୂମି । କଣ୍ୟୁଗିରି ଉପରେ ଏକ ଅପୂର୍ବ ସୁନ୍ଦରୀ କନ୍ୟା ଅବସ୍ଥାନ କରନ୍ତି । ତାଙ୍କ ପାଦତଳେ ଫୁଟିଛି ସୁବର୍ଣ୍ଣ ପଦ୍ମ । ଚମତ୍କୃତ ହେଲେ ଦୁଇ ଭାଇ ସେ କନ୍ୟାକୁ ଦେଖି ।

ମର୍ତ୍ତ୍ୟରେ ତ ଏଭଳି କନ୍ୟା ସମ୍ଭବ ନୁହେଁ । ତେବେ ଏ କିଏ ? ପଦ-ତଳେ ପ୍ରସ୍ଫୁଟିତ ସୁବର୍ଣ୍ଣ ପଦ୍ମ । ଏ କ'ଣ ସର୍ବ ଲକ୍ଷଣ ଯୁକ୍ତ ନାରାୟଣଙ୍କ ପତ୍ନୀ ଲକ୍ଷ୍ମୀ ?

ଐଶ୍ୱର୍ଯ୍ୟର ଅଧିକାରିଣୀ ବୈକୁଣ୍ଠପୁର ତେଜି ଏ କଙ୍କରିତ ପ୍ରସ୍ତର ଗଦା ଉପରେ ସେ କାହିଁକି ?

ଦୁଇ ଭାଇଙ୍କର ସାହସ ହେଉନାହିଁ ତାଙ୍କ ପାଖକୁ ଯାଇ ପଚାରିବାକୁ । ମନର ପୁଞ୍ଜିଭୂତ ସନ୍ଦେହର ଅବସାନ ପାଇଁ ବୁଝିବାକୁ ହେବ ସେ କିଏ ?

ସାହସ ସଞ୍ଚୟ କରି ଦୁଇ ଭାଇ ଉଠିଲେ ପର୍ବତ ଉପରେ । ଦେବୀ ହେଠ-ମୁଖ ହୋଇ ବସିଛନ୍ତି । ଦୁଇ ଭାଇ ଟିକିଏ ନିରୀକ୍ଷଣ କରି ପଚାରିଲେ, ହେ ଜଗତ

ମୋହନୀ ଦେବୀ ତୁମେ କାହାର ଘରଣୀ ? ଆମେ ଚତୁର୍ଦ୍ଦଶପୁର ବୁଲି ଦେଖି ଆସିଛୁ, ମାତ୍ର ତୁମଭଳି ସୁନ୍ଦରୀ ତ କେଉଁ ପୁରରେ ଦେଖି ନାହୁଁ । ହେ ସମସ୍ତ ସୌନ୍ଦର୍ଯ୍ୟର ଅଧିକାରିଣୀ ! ତୁମେ କିଏ ?

ଦେବୀ ରାକ୍ଷସଙ୍କ କଥାର କୌଣସି ଉତ୍ତର ଦେଲେ ନାହିଁ । ଅଞ୍ଚଳ ଉହାଡ଼ କରି ତଳକୁ ମୁଖ ପୋତି ବସିଲେ ସାଧାରଣ ସ୍ତ୍ରୀ ଲୋକଙ୍କ ଭଳି । ସତେ ଯେପରି ଦୁଃଖରେ ସେ ମ୍ରିୟମାଣା ।

ମଧୁର ସମ୍ଭାଷଣ କରିବାକୁ ଯାଇ ଚଣ୍ଡାସୁର କହିଲା— ହେ ମନସ୍ୱିନୀ ତୁମେ କେଉଁ ପୁରରୁ ବିଜେ କରିଛ ? ତୁମର ପିତା ମାତା କିଏ ? କେଉଁ ଦୋଷ ଯୋଗୁ ତୁମ ସ୍ୱାମୀ ତୁମ ଉପରେ ରୁଷ୍ଟ ହେବାରୁ ତୁମେ ଏ ଜନ ମାନବ ପରିତ୍ୟକ୍ତ ଭୂମିରେ ଅବସ୍ଥାନ କରିଛ ? ତୁମେ ମାନବୀ, ନାଁ ଦାନବୀ, ନାଁ ପିଶାଚୀ ? ତୁମ ରୂପ ଦେଖି ମନେ ହେଉଛି ତୁମେ କ'ଣ ସତେ ଆଉ ବଣ ଦେବତା ? ଗହନ ବିପିନ ତ୍ୟାଗ କରି ଏଠାରେ ବିଜେ କରିଛ । ଆମ୍ଭେ ମହାମହିମ ରାଜା ମହିଷା-ସୁରର ସେନାପତି । ଏ ଅଞ୍ଚଳର ସମସ୍ତ ଦାୟିତ୍ୱ ଆମ ଉପରେ ନ୍ୟସ୍ତ । ସମସ୍ତ ଅରିଷ୍ଟ ଉତ୍ପାତକୁ ଆମେ ଦୃଢ଼ ହସ୍ତରେ ଦମନ କରିଥାଉ । ଏ ସ୍ଥାନ ଶ୍ୱାପଦ ସଙ୍କୁଳ । ସୂର୍ଯ୍ୟ ଅସ୍ତ ହେଲେ ବ୍ୟାଘ୍ର ଭାଲୁ ଏଠାରେ ତାଙ୍କର ହିଂସ୍ର ଲୀଳା ଆରମ୍ଭ କରିଦେବେ । ତେଣୁ ତୁମର ଉଚିତ ପରିଚୟ ପାଇଲେ ଆମେ ବିହିତ ବ୍ୟବସ୍ଥା କରିବୁ ।

ଦେବୀ ତା କଥାର କୌଣସି ଉତ୍ତର ଦେଲେ ନାହିଁ ।

ପୁନର୍ବାର ଶୁମ୍ଭାସୁର କହିଲା ମହାରାଣୀ, ତୁମେ ମହିଷାସୁରର ରାଣୀ ହେବାକୁ ଚାହୁଁଛ କି ? ଯଦି ତାଙ୍କୁ ନ ଚାହଁ ଆମକୁ ବିବାହ କରିପାର । ତୁମକୁ ପାଇଲେ ଆମେ କିଙ୍କର ଭଳି ତୁମ ପଦ ତଳେ ନିତ୍ୟ ଖଟୁଥିବୁ ।

ସ୍ମିତହାସ୍ୟ ପୂର୍ବକ ଦେବୀ ରାକ୍ଷସଙ୍କୁ କଟାକ୍ଷିତ ଦୃଷ୍ଟିରେ ଅବଲୋକନ କଲେ । ତାଙ୍କର ଅପାଙ୍ଗ ଦୃଷ୍ଟିରେ ରାକ୍ଷସ କାମରେ ପୀଡ଼ିତ ହୋଇ ପଡ଼ିଲେ ।

ଦେବୀ କହିଲେ ଅଗ୍ନିକାର ଅଗ୍ନିର ମୁଁ କନ୍ୟା । ଗୋତ୍ର ମୋର ନିରାକାର । ସ୍ୱାମୀ ମୋର ପରମ ଦେବତ । ମାତ୍ର ମୋର ଦୁଷ୍ଟଗଣଯୋଗୁ ସ୍ୱାମୀ ମୋତେ ତ୍ୟାଗକଲେ । ମୋର ପୂର୍ବ କଠିନ ବ୍ରତ ଯୋଗୁ ଗୋଟିଏ ବର୍ଷ ବ ମୁଁ ସ୍ୱାମୀ ସହିତ କଥାଇ ନାହିଁ । ସ୍ୱାମୀଙ୍କ ଦ୍ୱାରା ଲାଞ୍ଛିତା ହୋଇ ଜୀବନ ରକ୍ଷା କବା କଭ ? ତେଣୁ ହଂସ୍ରଜନ୍ତୁଙ୍କ ମୋର ଭୟ ନାହିଁ । ତୁମେ ଯାଇ ମହିଷାସୁରକୁ କୁହ ମୁଁ ତା ସଙ୍ଗ ଚାହୁଁଛି ।

ମହିଷାସୁରର ସହଧର୍ମିଣୀ ହେବାକୁ ବୃତ୍ତାନ୍ତ ଶୁଣି ରାକ୍ଷସ ଦୁହେଁ ଦେବୀଙ୍କ ଚରଣ ତଳେ ପଡ଼ି ନିଜର ଦୋଷ କ୍ଷମା ମାଗିନେଲେ । ତତ୍ପରେ ଶିବ ସ୍ମରଣ କରି ଧାଇଁଲେ ମହିଷାସୁର ନିକଟକୁ । ଅବିଳମ୍ବେ ସେମାନଙ୍କର ଭେଟ ହେଲା ରାକ୍ଷସରାଜ ମହିଷାସୁର ସହିତ ।

ଦେବୀଙ୍କର ସ୍ୱରୂପ ଚଣ୍ଡ ମୁଣ୍ଡ ଯାହା ବର୍ଣ୍ଣନା କଲେ, ତାହା ଶୁଣି ମହିଷାସୁର କାମଦଗ୍ଧ ହୋଇଗଲା । ସେ ଚଣ୍ଡ ମୁଣ୍ଡଙ୍କ ହାତ ଧରି ଶୀଘ୍ର ସେ ନାରୀରତ୍ନକୁ ନେଇ ଆସିବାକୁ ମିନତି କଲା । ଚଣ୍ଡ ମୁଣ୍ଡ ମହିଷାକୁ ଶୀଘ୍ର ସେହି ନାରୀରତ୍ନ ଧରି ଫେରି ଆସିବାକୁ ପ୍ରତିଶ୍ରୁତି ଦେଇ କଣ୍ଠଗିରି ଆଡ଼େ ଛୁଟିଲେ । କିନ୍ତୁ ମହିଷାର ବଡ଼ ସନ୍ଦେହ ଏ ଦୁଇଭାଇ ପହଞ୍ଚିବା ପୂର୍ବରୁ ସେ କେଉଁ ଆଡ଼େ ବୋଧେ ପଳାଇ ଯାଇଥିବ । ଜଣେ ରହି ଜଣେ ଖବର ଦେବାପାଇଁ କାହିଁକି ଆସିଲେ ନାହିଁ ବୋଲି ମନେ ମନେ ଚଣ୍ଡ ମୁଣ୍ଡକୁ ଭର୍ତ୍ସନା କଲା । ତା'ର ମନ କେଉଁଠି ଲାଗୁ ନଥାଏ । କ୍ଷଣେ ଉଠେ, କ୍ଷଣେ ବସେ, ପୁଣି କ୍ଷଣେ ଏଣେ ତେଣେ ପଦଚାରଣ କରେ । କିଞ୍ଚିତ ସମୟ ତାକୁ ଦୀର୍ଘ ସମୟ ଭଳି ଲାଗେ । ସାମାନ୍ୟ ଶବ୍ଦ ହେବା ମାତ୍ରେ ସେ ମନେକରେ ସେମାନେ ଆସିଗଲେ କି ? ତେଣୁ ନିଜକୁ ପ୍ରସ୍ତୁତ କରି ପକାଏ ଦେବୀଙ୍କୁ ପ୍ରଥମ ସମ୍ଭାଷଣ ଜଣାଇବାକୁ ।

ଚଣ୍ଡମୁଣ୍ଡ ଫେରିଲେ । କିନ୍ତୁ ସଙ୍ଗରେ ନାହିଁ ସେହି ଜଗତ୍‌ମୋହିନୀ ବାମା ।

ମହାମା କହୁଛନ୍ତି ଏହିବା ପୂର୍ବରୁ ଚଣ୍ଡ ମୁଣ୍ଡ କହିଲେ, ମୋ ପ୍ରତିଜ୍ଞା ନାହିଁ ଆମ କଥାକୁ । କହିଲ ତୁମେ ମିଛରେ କହୁଛ । ଯଦି ପ୍ରକୃତ ମହାପାତ୍ରର ମୋତେ ବିବାହ କରିବାକୁ ଚାହୁଁଥାଏ, ତେବେ ମୋ ଏଠାକୁ ଆସୁ—ତାକୁ ମୁଁ ଦେଖନ୍ତି ମୋ ବି ମୋତେ ଦେଖନ୍ତୁ । ଦୁହେଁ ଦୁହିଁଙ୍କୁ ମନୋମତ କଲେ ବିବାହ କରନ୍ତୁ ।

କୋଧରେ ରାକ୍ଷସରାଜ ପ୍ରଚଣ୍ଡ । ଉଚ୍ଚ ସ୍ୱରରେ ଅଟ୍ଟହାସ୍ୟ କରି କହିଲା, ଆରେ ଯେଉଁ ଭଳି ସ୍ତ୍ରୀ ନୁହେଁ, ସେ ଗୋଟାଏ ଚଞ୍ଚଳା ନାଗରୀ । ଯେଉଁ ସ୍ତ୍ରୀ ପୁରୁଷକୁ ଦେଖିବାକୁ ଚାହୁଁଛି, ସେ କେବେ ସତୀ ସ୍ତ୍ରୀ ନୁହେଁ । ଅରେ ଚଣ୍ଡ ମୁଣ୍ଡ, ଶୀଘ୍ର ତୁମେ ଯାଇ ତାକୁ ଧରି ଆଣ । ଯଦି ଭଲରେ ନ ଆସେ ତେବେ ତାର କେଶ ଧରି ଘେନି ଆସ ।

ପବନଠାରୁ ବେଗରେ ବିଷୟେ ଧାଇଁଲେ । ସେ କାହୁଁ ଜାଣିବେ ସେ ରାକ୍ଷସ କୂଳ ଧ୍ୱଂସିନୀ ଦେବୀ ଦୁର୍ଗା ବୋଲି । ଯାହାର ଆଦିଅନ୍ତ ବେଦରେ ବ୍ରହ୍ମା ପାଇ ନାହାନ୍ତି, ତାକୁ ଚଣ୍ଡମୁଣ୍ଡ କଣ ଜାଣିବେ ? ସେ ଜନନୀ ରୂପରେ ଜନ୍ମ ଦେଉଛି । ସ୍ତ୍ରୀ ରୂପରେ ବଂଶ ରକ୍ଷାକର୍ତ୍ରୀ ହେଉଛି, ପୁଣି ସେ ମୃତ୍ୟୁ ରୂପରେ ଧ୍ୱଂସ କରୁଛି ।

ଦେବତାଙ୍କ ଦୁଃଖ ମୋଚନ ପାଇଁ ସେ ଆସିଛି ରାକ୍ଷସ କୂଳ ଧ୍ୱଂସ କରିବାକୁ । ଜାଣି ପାରିଲେ ନାହିଁ ଚଣ୍ଡ ମୁଣ୍ଡ । ଜ୍ୱଳନ୍ତ ଅଗ୍ନିଶିଖାକୁ ଝାମ୍ପ ଦେଇ ପତଙ୍ଗର ଯେଉଁ ଅବସ୍ଥା ହୁଏ ତାଙ୍କ କେଶାକର୍ଷଣ କରିବାକୁ ଯାଇ ଚଣ୍ଡ ମୁଣ୍ଡଙ୍କର ସେହି ଅବସ୍ଥା ହେଲ । ମାତ୍ର ଗୋଟିଏ ହୁଂକାର । ଅକଥନୀୟ ସେ ହୁଂକାରର ବର୍ଣ୍ଣନା । ସେ ହୁଂକାର ବାତ୍ୟାଠାରୁ ଭୟଙ୍କର—ଦୁର୍ଭିକ୍ଷ; ମହାମାରୀ ଠାରୁ ଭୀଷଣ ।

ସେ ପ୍ରଚଣ୍ଡ ହୁଂକାରରେ ସତେ ଯେପରି, ଗ୍ରହ ନକ୍ଷତ୍ର କକ୍ଷଚ୍ୟୁତ ହେଲାଭଳି ରାକ୍ଷସ ଦସ୍ୟୁ ମନେକଲେ । ବାତଚକ୍ର ପରି ଘୂରିଗଲା ତାଙ୍କ ମୁଣ୍ଡ । କ୍ଷଣଙ୍କ ମଧ୍ୟରେ ଅସୀମ ଶକ୍ତି ତାଙ୍କର କେଉଁଆଡ଼େ ଲୋପ ପାଇଗଲା ।

ଆଖି ଆଗରେ ପ୍ରଶାନ୍ତ ମାତୃମୂର୍ତ୍ତି । ଦଶଦିଗ ବ୍ୟାପୀ ରହିଛନ୍ତି ତାଙ୍କ ଭୁଜଗୁଡ଼ିକ । ଶର ଆରାଧ୍ୟ ତ୍ରିଲୋଚନଙ୍କ ପରି କପାଳରେ ତୃତୀୟ ନେତ୍ର । ମୁଖରେ ଫୁଟି ଉଠିଲା ତାଙ୍କର ଅସ୍ପଷ୍ଟ ଧ୍ୱନି—ମା' !

ଆହା ! ସମସ୍ତ ଦମ୍ଭ ଅହମିକାର ପୂର୍ଣ୍ଣଚ୍ଛେଦ ଟାଣି ନଥର ଦେହ ଦୁଇଟି ଖସି ପଡ଼ିଲେ ସେହି ଚଣ୍ଡୀର ପଦତଳେ ।



# ମାୟାବିନୀ

ଆଜି ତାର ଚିତ୍ତ ଅସ୍ଥିର । କୌଣସି ସ୍ଥାନରେ ଟିକିଏ ହେଲେ ବସି ପାରୁନାହିଁ କମ୍ବା କିଛି କରିପାରୁ ନାହିଁ । ଯେଉଁଠି ଟିକିଏ ବସି ପଡ଼ିଲେ ମୁହୂର୍ତ୍ତେ ନ ଯାଉଣୁ ପୁଣି ଉଠି ପଡ଼ୁଛି—କେଇ ପାଉଣ୍ଡ ଗୃଲି ଟିକିଏ ବସି ପଡ଼ୁଛି । ବାହାରେ କିଛି ଶବ୍ଦ ହେଲେ, ବଡ଼ ଆଶାୟୀ ହୋଇ ଧାଇଁ ଯାଏ ବାହାରକୁ । ମାତ୍ର ସେ ଦେଖେ ବାହାରେ କେହି ନାହାନ୍ତି । କେବଳ ରକ୍ଷୀ ହାତରେ ଖଣ୍ଡା ଧରି ଯାହା ପଇଁତରା ମାରୁଛି ସେତିକି । ନିରାଶରେ ପୁଣି ଫେରି ଆସେ ଅନ୍ତଃପୁର ଭିତରକୁ ।

ମନ ତାର ଦୋଦୁଲ୍ୟମାନ । କୌଣସି କଥା ସେ ସ୍ଥିର ଭାବରେ ଚିନ୍ତା କରିପାରୁନାହିଁ । କ୍ଷଣେ ଉଠି କ୍ଷଣେ ବସି କ୍ଷଣେ ବୁଲି ସେ ଘର୍ମାକ୍ତ କଳେବର ।

କନ୍ୟା ମାସର କୃଷ୍ଣପକ୍ଷ ନବମୀ । ନ ଘଡ଼ି ଅନ୍ଧାର ପରେ ଆକାଶରେ ଚନ୍ଦ୍ର ଉଇଁଲେ । ସେ ମଧ୍ୟ ପୂର୍ବାକାଶକୁ ଅତିକ୍ରମ କରି ମଧ୍ୟାକାଶର ପାଖାପାଖି ହେଲେଣି । ଓଃ—କାହିଁ କେତେବେଳୁ ଲୋକ ଦି'ଟା ଗଲେ ଯେ ଏ ପର୍ଯ୍ୟନ୍ତ ଫେରିଲେ ନାହିଁ ? କଣ ହେଲା ତାଙ୍କର, ଏତେ ବିଳମ୍ବ କଲେ କାହିଁକି ? ବିଳମ୍ବର ତ କିଛି କାରଣ ନାହିଁ ।

ତା ହେଲେ ସେମାନେ କଣ ସେହି ନବଯୁବତୀ ସହିତ··· । ନା ନା ତା କେବେ ହେବ ନାହିଁ । ଏତେବଡ଼ ସ୍ପର୍ଦ୍ଧା ତାଙ୍କର କେବେ ହୋଇପାରେନା । ଯାହା ତାଙ୍କ ପ୍ରଭୁଙ୍କ ପାଇଁ ଉଦ୍ଦିଷ୍ଟ ସେମାନେ କେବେ ତାହା ନିଜେ ଭୋଗ କରିପାରିବେ ନାହିଁ । ସେହିଭଳି ଅସଂଯତ ଲୋକ କେବେ ସେମାନେ ନୁହନ୍ତି ।

ତେବେ ଏତେବେଳ ଯାଏ ଗଲେ କୁଆଡ଼େ ?

ସତେ ତ ସେମାନେ ଗଲେ କୁଆଡ଼େ ? ହେଇ ରତ୍ନଗିରି ଅଳ୍ପ କିଛି ଦୂର । ସେଇଠି ସେ ବସିଥିଲା ବୋଲି ସେମାନେ ଦେଖି ଆସିଥିଲେ । ତାହା ହେଲେ

ଏମାନେ ଫେରିଯାଇ ମେଠି ପହଞ୍ଚିଲା ବେଳକୁ ସେ କଣ କେଉଁଆଡ଼େ ପଳାଇ ଯାଇଛି, ସବାରୀ ଏ ଦୁଇ ଭାଇ ତାଙ୍କୁ ଖୋଜୁ ଖୋଜୁ ଏତେବେଳ ହେଲାଣି ?

ପ୍ରକୃତରେ ସେ ଯଦି ପଳାଇ ଯାଇଥିବ ତେବେ ଏମାନେ ତାଙ୍କୁ ଏ ରାତିରେ ପାଇବେ କିପରି ? ରାତିରେ ସମସ୍ତେ ତ ଶୋଇଥିବେ, କିଏ ତାଙ୍କୁ ଦେଖି-ଥିବ ଯେ ଏମାନେ ତାଙ୍କୁ ପଚାରିଲେ ବୁଝିବେ ? ଓଃ—କି ଭୁଲ୍ ନ କଲେ ଏ ଦି'ଟା ଭାଇ । ଜଣେ ରହି ଜଣେ ଆସି ମୋ ପାଖରୁ ବୁଝି ଯାଇଥିଲେ କଣ କ୍ଷତିଟା ହୋଇଯାଇଥାନ୍ତା । ଯେଉଁଠିକି ଯିବେ ଦୁଇଜଣ ସାଙ୍ଗ ହୋଇ ଯିବେ । ଏକାଗଲେ ତାଙ୍କୁ ଯେପରି କିଏ ମାରି ପକାଇବ !

ଗଲେ ତ ଗଲେ; ଟିକିଏ ଭଲ ସମ୍ବାଦ କାହା ହାତରେ ପଠାନ୍ତେ— ଯାଉ ଯାଉ ଡେରି ହେବ । ତାହା ହେଲେ ବିନିଦ୍ର ହୋଇ ସେ ଅପେକ୍ଷା କରନ୍ତା ନାହିଁ ।

ଦେଖୁଦେଖୁ ପୂର୍ବାକାଶ ଉଜ୍ଜ୍ୱଳ ହୋଇଆସିଲା । ଅବୋଧ ଭାଷାରେ ଏକ ପରେ ଏକ ପକ୍ଷୀ ସ୍ୱର ମେଲି ଦେଲେ । ସତେ ଯେପରି ସେମାନେ ଉଚ୍ଚ ସ୍ୱରରେ କହୁଛନ୍ତି ଯାଗ ଯାଗ ଗ୍ରାମ—ନଗରବାସୀ, ରାତି ପାହିଗଲା । ନୂତନ ଦିନର ନୂଆ ପ୍ରେରଣା ନେଇ ତୁମେ ଆଗେଇ ଚାଲ ।

ବଡ଼ ବିରକ୍ତ ବୋଧ ହେଲା ତାଙ୍କୁ । ଏଃ—ତୁଚ୍ଛାଟାରେ ରାତିଟା ତାର ପାହିଗଲା । ଟିକିଏ ହେଲେ ଆଖିର ପରଦା ତୋଳା ଉପରେ ନଇଁ ଆସିଲା ନାହିଁ । କି ଦୁର୍ଯୋଗ । ସ୍ୱର୍ଗ ମର୍ତ୍ତ୍ୟର ଯେ ଅଧୀଶ୍ୱର ସେ ଗୋଟାଏ ସ୍ତ୍ରୀ ପାଇଁ ସାରା ରାତି ଅନିଦ୍ରା । ତଥାପି ମଧ୍ୟ ସେହି ସ୍ତ୍ରୀ ରତ୍ନ ଦୁର୍ଲଭ ତା ପକ୍ଷରେ । ଏହାଠାରୁ ଆଉ ଦୁଃଖର କଥା କଣ ଅଛି ।

ରାଜନବରର ଦ୍ୱାର ପରେ ଦ୍ୱାର ଅତିକ୍ରମ କରି ବାହାରି ପଡ଼ିଲା ରାଜ ଦାଣ୍ଡକୁ ।

ସେ ପର୍ଯ୍ୟନ୍ତ କୃଳବଣ ମାଟଶାର ସାନଦାନ୍ତ ଶୂନ୍ୟ ହୋଇ ପଡ଼ି ରହିଥାଏ । ମହାକାଳ ଗିରି ଅଂଶ ପର୍ଯ୍ୟନ୍ତ ଯେଉଁ ରାଜଦାଣ୍ଡ ଜନ ଗହଳରେ ମାଟିପଡ଼ି ତାହା ଖାଁ ଖାଁ ଲାଗୁଥାଏ ତାକୁ । ଗୋଟିଏ ଗୋଟିଏ ପାଦ ପକାଇ ରାଜଦାଣ୍ଡରେ ସେ ଚାଲିଗଲା କିଛି ବାଟ । ହେଇ ଆଗରେ ଦେଖାଯାଉଛି ଶୁମ୍ଭ ନିଶୁମ୍ଭଙ୍କ ଅଟ୍ଟାଳିକା । ବିଚିତ୍ର ଗଢ଼ିବେ ବିଶ୍ୱକର୍ମା ତାହା ଗଠନ କରିଛି । ଅଟ୍ଟାଳିକାଟିର ବାହାରର ଶୋଭା ଯେଉଁଭଳି ଚମତ୍କାର ଭିତରର ଶୋଭା ମଧ୍ୟ ସେହିଭଳି । ଧୀର ପଦକ୍ଷେପରେ ସେ ଆଗେଇଗଲା କେତେପାଦ ।

ପ୍ରଭାତ ହେବା ପୂର୍ବରୁ ଶଯ୍ୟା ତ୍ୟାଗ କରିବା ଯେଉଁମାନଙ୍କ ଅଭ୍ୟାସ, ସେମାନେ ବାହାରକୁ ଆସି ରାଜାଧିରାଜ ମହିଷାସୁରକୁ ଦେଖି ନିଜକୁ ସଂକୁଚିତ କରି ନିଅନ୍ତି । ପ୍ରବଳ ପ୍ରତାପୀ ଇନ୍ଦ୍ରାଦି ଦେବଗଣ ଦର୍ପଚୂର୍ଣ୍ଣକାରୀ ସସାଗର ଧରାର ଅଧୀଶ୍ୱର ବରାଧୀଶ୍ୱରବର ମହିଷାସୁରକୁ ଦେଖି କିଏ ବା ତା ସମ୍ମୁଖକୁ ଯିବାକୁ ଇଚ୍ଛା କରିବ ?

ଧୀର ପଦକ୍ଷେପରେ ମହିଷାସୁର ଆଗେଇଗଲା ଶୁମ୍ଭ ନିଶୁମ୍ଭଙ୍କ ଦ୍ୱାର ଆଡ଼କୁ । ହଠାତ୍ ରାଜାଧିରାଜଙ୍କୁ ଦ୍ୱାର ଦେଶରେ ଦେଖି, ଦ୍ୱାରୀ ସମ୍ମାନର ସହିତ ମଥା ନତ କରି ନିଜଙ୍କୁ ପଛେଇ ନେଲା ପଛକୁ । ସଙ୍ଗେ ସଙ୍ଗେ କୁହାଟିଆ ଉଚ୍ଚ ସ୍ୱରରେ ରାଜାଧିରାଜଙ୍କର ଆଗମନ ବାର୍ତ୍ତା ପ୍ରଚାର କରିଦେଲା । ଭାଟମାନେ ଗାଇ ଉଠିଲେ ମହିଷାସୁରର ଜୟ ଜୟକାର ।

ଅଳ୍ପ ସମୟ ପୂର୍ବରୁ ପ୍ରବଳ ପ୍ରତାପୀ ଶୁମ୍ଭ ନିଶୁମ୍ଭ ଶଯ୍ୟା ତ୍ୟାଗକରି ନିତ୍ୟକର୍ମରେ ବ୍ୟସ୍ତ ଥିଲେ । ହଠାତ୍ ମହିଷାସୁରର ଆଗମନ ସମ୍ବାଦ ଶୁଣି ଯଥାଶୀଘ୍ର ସବୁ ଶେଷ କରି ଧାଇଁ ଆସିଲେ ମହିଷାସୁର ସମ୍ମୁଖକୁ ।

ଓଃ—କି ଭାଗ୍ୟ । ପ୍ରଭାତ ହେବା ମାତ୍ରେ ରାଜଦର୍ଶନ କରି ସହଜଲଭ୍ୟ ।

ଶିର ନତ କରି ଦୁଇ ଭାଇ ମହାରାଜାଙ୍କୁ ଭକ୍ତିର ସହିତ ପ୍ରଣାମ କଲେ । ଶୁଖିଲା ହସ ମୁହଁରେ ଫୁଟାଇ ଉଭୟଙ୍କୁ ଛାତି ଉପରକୁ ଟାଣି ନେଲା ମହିଷାସୁର ।

ପ୍ରାଥମିକ ଦର୍ଶନ କାର୍ଯ୍ୟ ସରିଲାପରେ ସୁସ୍ୱାଦ୍ୟ ସୁରା ପାଇଁ ଆଦେଶ ଦେଲେ ଶୁମ୍ଭ । ସଙ୍ଗେ ସଙ୍ଗେ ହାତ ହଲାଇ ବାରଣ କରି ମହିଷାସୁର କହିଲା, ନା—ଥାଉ— ସମସ୍ତ ରାତି ମୁଁ ଅନିଦ୍ର ହୋଇ ସୁରାପାନ କରି କଟାଇଛି । ଗୋଟାଏ ସାଧାରଣ ବିଷୟରେ ମୁଁ ଏତେ ବ୍ୟସ୍ତ ହୋଇପଡ଼ିଛି ଯେ ଶରୀରର ଅସ୍ୱାଚ୍ଛନ୍ଦ ରାତିଟି ମୋତେ ଶାନ୍ତି ଦେଇପାରିନାହିଁ ।

ଶୁମ୍ଭ ଶୁମ୍ଭ ଦୁଇ ଭାଇ ବଡ଼ ବ୍ୟସ୍ତ ହୋଇ ପଡ଼ିଲେ ! କଣ ଗୋଟାଏ ଏ ଭଳି ହେଲା ଯେ ସମସ୍ତ ରାତିଟା ଅନିଦ୍ର ଛଟପଟ ହୋଇ ଆପଣ କଟାଇଲେ । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳର ଯେ ଅଧୀଶ୍ୱର, ତା ପାଖରେ ଅପ୍ରାପ୍ୟ ଏ ଭଳି କି ବସ୍ତୁ ଅଛି ?

ମହିଷାସୁର— ମଣିଷର ଦେହରେ ମଇଁଷିର ମୁଣ୍ଡ । ଠିକ୍ ମଇଁଷି ଭଳି ଡିମା ଡିମା ଆଖି, ଚଟାଳିଆ ଗୋଜା ଗୋଜା ଶିଙ୍ଗ । କଥା କହିଲା ବେଳେ ଜିଭଟା ପଦାକୁ ବାହାରି ଆସୁଥାଏ ଓ ତା କଥା ଗୁଡ଼ାକ ଘାଉଁ ଘାଉଁ ଶୁଭୁଥାଏ ଯମର ବାହାନ କୃତାନ୍ତକ ମଇଁଷିର ସନ୍ତକ ସେତିକ । ଅବଶିଷ୍ଟ ଅଙ୍ଗ କପିଳ ସିଂହ ଦନୁଜର ସ୍ତ୍ରୀ ଭଳି ସୁନ୍ଦର । ହାତ ଗୋଡ଼ ସମସ୍ତ ଅବୟବ ମଣିଷ ଭଳି । ବିଚିତ୍ର ସ୍ୱରୂପରେ ବିଧାତା ତାକୁ ଗଢ଼ିଛି ।

ଶୁମ୍ଭର ପ୍ରଶ୍ନରେ ମହିଷାସୁର କହିଲା, ଚଣ୍ଡ ମୁଣ୍ଡଙ୍କ ଠାରୁ ଶୁଣିଲି ରତ୍ନଗିରି ଉପରେ ଗୋଟିଏ ସ୍ତ୍ରୀ ବସିଛି । ତାର ସୌନ୍ଦର୍ଯ୍ୟର ଉପମା ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ନାହିଁ । ସ୍ୱର୍ଗର ରମ୍ଭା, ଉର୍ବଶୀ ତାର କୌଣସି ଗୋଟିଏ ଅଙ୍ଗ ସହିତ ସମାନ ହେବେ ନାହିଁ । ତା ଅଙ୍ଗର ସୁବାସ ପାରିଜାତ ପୁଷ୍ପର ସୁବାସ ଠାରୁ ଉତ୍କୃଷ୍ଟ । ତାର ରୂପ, ତାର ଅଙ୍ଗ ଗନ୍ଧରେ କୁଆଡ଼େ ପୁରୁଷ ଶ୍ରେଷ୍ଠ ନିଜକୁ ତା ପାଦ ପାଖରେ ଦାସ ଭଳି ଲୋଟାଇ ଦେବ । ତୁମେ ତ ଜାଣ ପୁରୁଷ ଶ୍ରେଷ୍ଠ ଭାବେ ମୁଁ ତ୍ରିଭୁବନରେ ପୁରୁଷ ଚୂଡ଼ାମଣି । ସେମାନଙ୍କଠାରୁ ସେହି ନାରୀର ବର୍ଣ୍ଣନା ଶୁଣିଶୁଣି ମୋ ଭିତରଟା କିଭଳି ଧକ୍ ଧକ୍ କରି ଉଠିଲା । ମନେହେଲା ତା ବିହୁନରେ ମୋର ସମସ୍ତ ପୁରୁଷତ୍ୱ ଯେପରି ଖଣ୍ଡେ ପୋଡ଼ା ଅଙ୍ଗାର । ସେଥିପାଇଁ ସଙ୍ଗେ ସଙ୍ଗେ

ମୁଁ ଆଦେଶ ଦେଲି ସେହି ସ୍ତ୍ରୀ ରତ୍ନକୁ ତୁମେ ଶୀଘ୍ର ମୋ ନିକଟକୁ ଧରି ଆଣ । ଏହିକ୍ଷଣି ଆଣି ଦେଉଛୁ ବୋଲି କହି ସେ ଦୁହେଁ ଗତ ସନ୍ଧ୍ୟା ପରଠାରୁ ଗଲେଣି ସେ ଏପର୍ଯ୍ୟନ୍ତ ଫେରିଲେ ନାହିଁ । ବେଳେ ବେଳେ ମୋର ମନେ ହୁଏ ସେ ଦୁହେଁ କଣ ଆଜି ସେହି ସୌନ୍ଦର୍ଯ୍ୟମୟୀ ନାରୀର ଶୋଭାରେ ଆତ୍ମ-ହରା ହୋଇ ତା ସହିତ ରାତି ଯାପନ କଲେକି ? ମାତ୍ର ତୁମେତ ଚଣ୍ଡମୁଣ୍ଡଙ୍କୁ ଭଲ ରୂପେ ଜାଣ । ତାଙ୍କର ସ୍ୱଭାବ ଏପରି ନୁହେଁ । ଯଦି ସେମାନେ ତା ସହିତ ରାତି ଯାପନ କରିବାକୁ ଇଚ୍ଛା ଥାନ୍ତା ତେବେ ମୋତେ କାହିଁକି ତା ଆଣି ଦେବେ ବୋଲି କହନ୍ତେ ? ତା' ନ ହେଲେ ସେମାନେ ଆଉ ଚାଲି କୁଆଡେ ? ଜେନାବଳୀ ନଗର, ତାହାର ପାଖକୁ କୁଳବନ୍ତ ପାହଣା ଆଉ ନଦୀର ସେ ପାଖରେ ରତ୍ନଗିରି । ହେଇ କେଇ ପାହୁଣ୍ଡର ବାଟ ଭଳି ।

ବଡ ମନଯୋଗ ସହକାରେ ମହିଷାସୁରର କଥା ଶୁମ୍ଭ ନିଶୁମ୍ଭ ଶୁଣୁ ଥାନ୍ତି । ବେଳେ ବେଳେ ତାଙ୍କ ମୁହଁରେ ସମବେଦନା ଫୁଟି ଉଠୁଥାଏ । ସତେ ଚଣ୍ଡମୁଣ୍ଡ ହଠା ଗଲେ କୁଆଡ଼େ । ରାଜାଙ୍କୁ କାମଜ୍ୱରରେ ପୀଡ଼ିତ କରି ତାର ଔଷଧ ପାଇଁ ଗଲେ ଯେ ଏତେବେଳଯାଏ ବାହୁଡ଼ି ଆସିଲେ ନାହିଁ ? କଣ କୁହାଯିବ ତାଙ୍କୁ ।

ମହିଷାସୁର ଟିକିଏ ବ୍ୟସ୍ତ ହୋଇ କହିଲା ହଁ ହଁ କୁହତ, କଣ କରିବ ଏଥିରେ । ସେମାନଙ୍କ ଭଳି ବୀର ଯଦି ଏହିଭଳି କରନ୍ତି ତେବେ ଆଉ କାହା କଥା କହିବା ?

ଶୁମ୍ଭ ନିଶୁମ୍ଭ ମହିଷାସୁରଙ୍କୁ ବୋଧ ଦେଇ କହିଲେ, ଅପଣେ ନବରଙ୍କୁ ବିଜେ କରନ୍ତୁ, ଅମେ ଦୁଇହେଁ ଯାଉଛୁ ଦେଖିବୁ ସେମାନେ ଗଲେ କୁଆଡ଼େ । ଆପଣଙ୍କ ଆଗରେ ହଲପ କରି କହୁଛୁ ସେ ବୀର ଭୋଗ୍ୟା ନାରୀ ଯେଉଁଠି ଥାଉନା କାହିଁକି ତାକୁ ଧରି ଆଣି ଆପଣଙ୍କ ପାଖରେ ସମର୍ପଣ କରିବୁ ।

ଏତେକତ ମହିଷାସୁର, ତୁପେ କାମ ପୀଡ଼ିତ । ଶୁମ୍ଭ ନିଶୁମ୍ଭ ବୋଧ ଦେଇ ନବରକୁ ଯିବାପାଇଁ କହିଲେ ମଧ୍ୟ ସେ ଟିକିଏ ଉଠ ଉଠ ହୋଇ ପୁଣି

ବସି ରହିଲେ ଗଜଦନ୍ତ ଆସନରେ ନା—ଆଉ ଡେରି କଲେ ଚଳିବ ନାହିଁ ଦୁଇଭାଇ ସଙ୍ଗେ ସଙ୍ଗେ ପ୍ରସ୍ତୁତ ହୋଇଗଲେ ଯିବା ପାଇଁ । ସେମାନେ ପ୍ରାସାଦରୁ ନ ବାହାରିବା ପର୍ଯ୍ୟନ୍ତ ମହିଷାସୁର ମଧ୍ୟ ବସିରହିଲା ସ୍ଥାଣୁ ଭଳି ସେଇଠି । ତେଣୁ ଯିବାକୁ ସେମାନଙ୍କ ତର ସହିଲା ନାହିଁ ?

ଦୁଇଭାଇ ନଗରରୁ ବାହାରି ରତ୍ନଗିରି ଆଡ଼େ ଚାଲିଲେ ଗଲାବେଳେ ଦୁହେଁ କଥାବାର୍ତ୍ତା ହୋଇ ଯାଉଥାନ୍ତି—ରାଜାର ଏଣିକି ଆଉ ସେଭଳି କିଛି ଶୁଦ୍ଧ ଜଣାଯାଉ ନାହିଁ । ଦେଖୁନା ଗୋଟାଏ ସାମାନ୍ୟ ସ୍ତ୍ରୀ ପାଇଁ ଆମଭଳି ଦୁଇଜଣ ବୀରଙ୍କୁ ପଠାଉଛି ?

ଶୁମ୍ଭ ନିଶୁମ୍ଭଙ୍କ ଭଳି ବୀର ନିଜେ ମହିଷାସୁର ମଧ୍ୟ ନୁହେଁ । ମହିଷାସୁର ତା ସହିତ ଯୁଦ୍ଧ କରି ଅତି ଶୋଚନୀୟ ଭାବେ ପରାସ୍ତ ହୋଇଛି । କିନ୍ତୁ ଦୁଇ ଭାଇଙ୍କର ମହିଷା ପ୍ରତି କପରି ଗୋଟାଏ ମମତା ଆସି ଯାଇଛି—ଯଦ୍ଵାରା ତାକୁ ସିଂହାସନରେ ବସାଇ ତାର ଅନୁଚରଭଳି ନିଜେ ଚଳୁଛନ୍ତି । ସମଗ୍ର ସସାଗରା ଧରା, ସ୍ୱର୍ଗପୁର, ସବୁ କିଛି ଶୁମ୍ଭ ନିଶୁମ୍ଭଙ୍କ ଦ୍ୱାରା ଅଧିକୃତ ହେଲେ ମଧ୍ୟ ରାଜା ହେଉଛି ମହିଷାସୁର । ଶୁମ୍ଭ ନିଶୁମ୍ଭ ସେମାନଙ୍କ ସେନାପତି ଭଳି । ମହିଷାସୁର ଜେନାବଳୀ ପୁରର ରାଜା । ଶୁମ୍ଭ ନିଶୁମ୍ଭ କୁଳବନ୍ତି ପାଟଣାର ଅଧୀଶ୍ୱର । କିନ୍ତୁ ଶୁମ୍ଭ ନିଶୁମ୍ଭ ମହିଷାକୁ ଯୁଦ୍ଧରେ ପରାସ୍ତ କଲେ ମଧ୍ୟ କୁଳବନ୍ତି ପାଟଣାର ଅଧୀଶ୍ୱର ମହିଷାସୁର ବୋଲି ଘୋଷଣା କଲେ । ସେହିଦିନୁ ମହିଷାସୁରକୁ ସିଂହାସନରେ ବସାଇ ଶୁମ୍ଭ ନିଶୁମ୍ଭ ତାର ଅଧୀନତା ସ୍ୱୀକାର କରନ୍ତି ।

ଶୁମ୍ଭ ନିଶୁମ୍ଭ ଚାଲିଛନ୍ତି ରତ୍ନଗିରି ଆଡ଼େ କାନ୍ଧରେ ଗୋଟାଏ ଗୋଟାଏ ମନ୍ଦରଗିରି ଭଳି ଗଦା ଧାରଣ କରି । ଶୀଘ୍ର ଶୀଘ୍ର ଗତିରେ କୁଳବନ୍ତି ପାଟଣାକୁ ଅତିକ୍ରମ କରି ବନମଧ୍ୟରେ ପ୍ରବେଶ କଲେ ସେମାନେ । ରତ୍ନଗିରିକୁ ଘେରି ବିରାଟ ଜଙ୍ଗଲ । ଯେଉଁ ଦିଗରୁ ରତ୍ନଗିରିକୁ ଗଲେ ମଧ୍ୟ ଅରଣ୍ୟ ଅତିକ୍ରମ କରିବାକୁ ପଡ଼ିବ । ରତ୍ନଗିରି ସମୁଦ୍ରର ପଶ୍ଚିମ ତଟରେ । ରତ୍ନଗିରି

ଠାରୁ ଦକ୍ଷିଣକୁ ଲମ୍ବି ଯାଇଛି ବହୁ ପାହାଡ଼ ପର୍ବତ । ଉଦୟଗିରି, ଲଳିତଗିରି, ସେହି ପାହାଡ଼ ମାନଙ୍କ ମଧ୍ୟରେ ପ୍ରସିଦ୍ଧ ପାହାଡ଼ ।

ମହା ପ୍ରତାପୀ ଶୁମ୍ଭ ନିଶୁମ୍ଭ । ସେ ଦୁଇଭାଇଙ୍କୁ ଦେଖିବା ମାତ୍ରେ ବଣର ରାଜା ମହାବଳ ବାଘ ବାଟଭାଙ୍ଗି ନିଜକୁ ଗଛ ଉହାଡ଼ରେ ଲୁଚାଇ ରଖେ । ତେଣୁ ନିର୍ଭୟ ହୋଇଥାଇ ।

ରତ୍ନଗିରିର ବନଭୂମିକୁ ଦୁଇ ଖେପାରେ ଅତିକ୍ରମ କରି ସେମାନେ ରତ୍ନଗିରି ଉପରକୁ ଉଠିଲେ । ଏଣେତେଣେ ଖୁବ୍ହିଁ ଅନ୍ୱେଷଣ କଲେ ଚଣ୍ଡମୁଣ୍ଡ ଓ ତାର ଅନୁଚର ମାନଙ୍କୁ ସେମାନେ ମାତ୍ର କାହାରିକୁ ସେ ଦେଖିପାରିଲେ ନାହିଁ । ଅଳ୍ପ କିଛି ଦୂର ରତ୍ନଗିରି ଉପରକୁ ଉଠିଲା ପରେ ସେମାନେ ଦେଖିଲେ ଏକ ସୁନ୍ଦରୀ କନ୍ୟା ରତ୍ନଗିରି ଉପରେ ବସିଛି । ତାହାର ଦେହ ଛୁଇଁ ବହିଆସୁଛି ମନ୍ଦ ମନ୍ଦ ପବନ । ସେ ପବନରେ ମଧ୍ୟ ଭାସି ଆସୁଛି ତା ଦେହର ଗନ୍ଧ । ଶୁମ୍ଭ ନିଶୁମ୍ଭଙ୍କ ନାସିକା ମଧ୍ୟରେ ସେ ଗନ୍ଧ ବାଜିବା ମାତ୍ରେ ତାଙ୍କୁ ବିହ୍ୱଳିତ କରି ପକାଇଲା । ତାଙ୍କର ମନେ ହେଲା ଏଭଳି ଗନ୍ଧ ଯେପରି ସେମାନେ ଆଉ କେଉଁଠି ଆଘ୍ରାଣ କରି ନାହାନ୍ତି । ଏଭଳିକି ପାରିଜାତ ପୁଷ୍ପର ମଧ୍ୟ ସେଭଳି ଗନ୍ଧ ନାହିଁ । ସ୍ତ୍ରୀ ଲୋକଟିର ସୌନ୍ଦର୍ଯ୍ୟର ପଟାନ୍ତର ନାହିଁ । ମସ୍ତକର କେଶ, କପୋଳ, ଚକ୍ଷୁ, ନାସିକା ସବୁକିଛି ଅତୀବ ମନୋହର ।

ଶୁମ୍ଭ ନିଶୁମ୍ଭ ସେହି ଅପୂର୍ବ ସୁନ୍ଦରୀକୁ ଦେଖି ତାଙ୍କ ହୃଦୟ ଭିତରେ ଏକ ଅବ୍ୟକ୍ତ ବେଦନା ଅନୁଭବ କଲେ । ସେମାନେ ବେଶ୍ ହୃଦୟଙ୍ଗମ କଲେ କାହିଁକି ମହିଷାସୁର ସାବରତି ଛଟପଟ ହୋଇ ବାତୁଳଙ୍କ ଭଳି ତାଙ୍କ ସାହାଯ୍ୟ ଲୋଡ଼ିବାକୁ ଆସିଥିଲା ।

ଏଣେ ତେଣେ ବୁଲି ବୁଲି ଦୁଇଭାଇ ସେହି ଅପୂର୍ବ ସୁନ୍ଦରୀ ନିକଟରେ ଉପନୀତ ହେଲେ । ସେମାନେ ଦେଖିଲେ ସେହି ନାରୀ ମୁଖ ତଳକୁ କରି ବସିଛି । ମୁଖରେ ଆନନ୍ଦର ଚିହ୍ନ ଟିକିଏ ହେଲେ ନାହିଁ । ସତେ ଯେପରି

ଦୁଃଖ ଚିନ୍ତାରେ ଭାବାକ୍ରାନ୍ତ ତାର ବଦନ ମଣ୍ଡଳ ତଥାପି ସେ ମୂର୍ତ୍ତିର ଶୋଭା ଅତ୍ୟନ୍ତ ମନୋହର ।

ଦୁଇ ତିନିଥର ଶୁମ୍ଭ ନିଶୁମ୍ଭ ସେହି ନାରୀକୁ ତୁମେ କିଏ, କେଉଁ ଦେଶରୁ ଆସିଛ ବୋଲି ପ୍ରଶ୍ନ କଲେ । ସେ କିନ୍ତୁ ନିରୁତ୍ତର । ଯେପରି ସେମାନଙ୍କ କଥା ତାଙ୍କ କାନ ପର୍ଯ୍ୟନ୍ତ ଯାଇପାରୁ ନାହିଁ ।

ଏମାନଙ୍କ ଭାଷଣ ଦର୍ପ । ତାଙ୍କର ଶକ୍ତି ପାଖରେ ହରିହର ବ୍ରହ୍ମା ସମାନ ହେବେନାହିଁ । ଆବଶ୍ୟ ମଧ୍ୟ ସେ ଦୁହେଁ ବିଶ୍ୱର ଯେ କୌଣସି ଲୋକ ହସ୍ତରେ । ତେଣୁ ସେମାନେ ଭୟ କରିବେ ବା କାହାକୁ । କିନ୍ତୁ ସହି ଅପୂର୍ବ ସୁନ୍ଦରୀ ନାରୀକୁ ଦୂରରୁ ଦେଖି ଶଙ୍କିତ ନ ହେଲେ ମଧ୍ୟ ମୋହିତ ହୋଇ ପଡ଼ିଛନ୍ତି । ସେଥି-ପାଇଁ ଥରକୁ ଥର ପ୍ରଶ୍ନ ପଚାରି ଉତ୍ତର ନ ପାଇଲେ ମଧ୍ୟ ବିରକ୍ତି ଆସୁନାହିଁ ।

କେତେକ୍ଷଣ ପରେ ସେହି ଅପୂର୍ବ ସୁନ୍ଦରୀ ଟିକିଏ ମୁଖ ଉପରକୁ କରି କହିଲେ, ତୁମେ ଦୁହେଁ ମୋତେ ମୋର ପରିଚୟ ପଚାରୁଥିଲ ? ମୋର ପରିଚୟ ସେଭଳି କିଛି ନାହିଁ । ମୋର କୁଳଗୋତ୍ର କିଛି ନ ଥିବାରୁ ମୁଁ ନିଜକୁ ପରାଂନିର୍ଭରଶୀଳୀ ବୋଲି ଧାରଣା କରେ । ଏଠାରେ ବହୁଦୂରରେ ମେରୁସ୍ଥଳରେ ମୁଁ ଜନ୍ମଲାଭ କରିଥିଲି । କୀରର ବିପାକରେ ପିତା ମାତାଙ୍କୁ ମୁଁ ଆଖିରେ ଦେଖି ନାହିଁ । ଯୌବନ କେଉଁଦିନୁ ମୋତେ ଭୁଲି ସାରିଥିଲି ମଧ୍ୟ, ସେଭଳି କୌଣସି ପୁରୁଷକୁ ପାଉନାହିଁ ଯାହା ସହିତ କି ମୁଁ ଗୃହବାସ ସୃଷ୍ଟି ହେବ । ତେଣୁ ଗ୍ରାମ ନଗର ଗ୍ରହ ବନ ମଧ୍ୟରେ ପଶିଛି, ଏ ଦେହକୁ ଯଦି କେହି ହିଂସ୍ରଜନ୍ତୁ ଖାଇଯାନ୍ତି ତେବେ ତାହା ମୋ ପକ୍ଷରେ ଶତଗୁଣେ ଉତ୍ତମ ହେବ । ତେଣୁ ଦୁଃଖ ହତାଶରେ ବଞ୍ଚିବା ଅପେକ୍ଷା ମରିଯିବା ସହସ୍ର ଗୁଣରେ ମୋ ପାଇଁ ଭଲ ।

ବିସ୍ମିତ ହେଲେ ଶୁମ୍ଭ ନିଶୁମ୍ଭ ତାଙ୍କ କଥାଶୁଣି । କି ଆଶ୍ଚର୍ଯ୍ୟ ! ଏଭଳି ନାରୀକୁ ବିବାହ ପାଇଁ କେହି ପୁରୁଷ ମିଳୁ ନାହିଁ ? ପ୍ରକୃତରେ ଏହା ସତ୍ୟ ନା ମିଥ୍ୟା ?

ଶୁମ୍ଭାସୁର କହିଲ, ଅଚ୍ଛା ତୁମ ନିକଟକୁ ପ୍ରବଳ ପ୍ରତାପୀ ମହିଷାସୁରର ଦୁଇ ସେନାପତି ଚଣ୍ଡମୁଣ୍ଡ ଆସିଥିଲେ । ତୁମେ ତାଙ୍କ ସହିତ ମହିଷାସୁରଙ୍କ ପାଖକୁ ଗଲ ନାହିଁ କାହିଁକି ? ଏତେବଡ ରାଜାଙ୍କୁ ଆଶାଦେଇ ଭଣ୍ଡିବା କଣ ଉଚିତ ?

ପାର୍ବତୀଶ୍ୱାସଟିଏ ଛାଡ଼ି ଦେବୀ କହିଲେ, ତୁମେ ଦୁହେଁ ବିଜ୍ଞ ବ୍ୟକ୍ତି ଭଳି ଦେଖାଯାଉଛ । କହିଲ ଭଳ, ମିଥ୍ୟାଠାରୁ ଆଉ ପାପ କିଛି ଅଛି ? ସତ ଅଛି ବୋଲି ସିନା ସାଗର ଘୂ ଘୂ୍ ଗର୍ଜନ କରି ଟିକିଏ ଉପରକୁ ମାଡ଼ିଆସି ପୁଣି ଫେରି ଯାଉଛି, ତା ନ ହେଲେ ଏ ମହୀକୁ କେଉଁଦିନୁ ସେ ଜଳମଗ୍ନ କରି ସାରନ୍ତାଣି । ମୋର ମନେ ହେଉଛି ତୁମେ ଦୁହେଁ ସତ୍ୟବନ୍ତ ଆଉ ନ୍ୟାୟବନ୍ତ ପୁରୁଷ । ଟିକିଏ କୁହତ ଦେଖି ମହିଷାସୁରର ଯଦି ମୋ ଠାରେ ଆବଶ୍ୟକ ଥାନ୍ତା ତେବେ ସେ ନିଜେ ତାର ସୈନ୍ୟ ବଳ ଧରି ଆସିନଥାନ୍ତା ମୋତେ ନେବା ପାଇଁ ? ଗୋଟାଏ ପୋଇଲି ଭଳି, କମ୍ବା ବାରବିଳାସିନୀ ଭଳି ମୁଁ ଯା ସହିତ ତା ସହିତ ତା ପାଖକୁ ଯିବା କଣ ଉଚିତ ? ସେମାନେ ଯେଉଁଭଳି ଆସି ମୋ ସହିତ ବ୍ୟବହାର ଦେଖାଇଲେ, ସେହିଭଳି ଫଳ ପାଇଲେ । ସତୀଙ୍କୁ ଲଙ୍ଘିଲେ କେହି କଣ କେବେ ଏ ବିଶ୍ୱରେ ରହିପାରେ । ମୁଁ ଦୁଃଖୀ ନିଆଶ୍ରି ବୋଲି ବଳାତ୍କାରେ ମୋର କେଶ ଧରିବାକୁ ହାତ ବଢ଼ାଇବା କଣ ଠିକ୍ ?

ଏଁ ଏ କଣ କହୁଛ ? ସେମାନେ ପାପିଷ୍ଠଙ୍କ ଭଳି ତୁମ କେଶ ଧରିବାକୁ ଇଚ୍ଛାକଲେ ? କାହିଁକି ତୁମେ ତ ମନ୍ଦ ପ୍ରସ୍ତାବ ଦେଇ ନ ଥିଲ ! ଯାହାର ଆବଶ୍ୟକ ଅଛି ସେ ନିଜେ ଆସିବା ଉଚିତ ।

ତୁମେ ଦୁହେଁ ଧର୍ମବନ୍ତ ପୁରୁଷ । ତୁମେ ମୋ ପାଖକୁ ଆସିଛ । ରୂପରେ ଗୁଣରେ ତୁମଭଳି ଏ ବିଶ୍ୱରେ ମୁଁ କାହାରିକୁ ଦେଖୁନାହିଁ । ତୁମ ପ୍ରଶସ୍ତ ବକ୍ଷ, ବଳିଷ୍ଠ ବାହୁ ଦେଖିଲେ ମନେହୁଏ ଅସୀମ ବଳଶାଳୀ ତୁମେ ଦୁହେଁ । କେଉଁ ନାରୀ ଏ ଜଗତରେ ଅଛି, ଯେ କି ତୁମ ବଳିଷ୍ଠ ଭୁଜ ଯୁଗଳରେ ନିଜକୁ ହଜାଇ ଦେବାକୁ ଇଚ୍ଛା କରିବ ନାହିଁ ।

ନିଜ ରୂପ ଗୁଣର ପ୍ରଶଂସା ସେହି ସୁନ୍ଦରୀ ମୁହଁରୁ ଶୁଣି ରାକ୍ଷସଦ୍ୱୟ ନିଜକୁ ଗର୍ବିତ ମନେକଲେ । ସେମାନେ ହସି ହସି କହିଲେ ତୁମେ ଯଦି ଆମ ଦୁହିଁଙ୍କୁ ବିବାହ କର ତେବେ ଆମେ କପରି ତୁମ ଆଗରେ ଆନନ୍ଦ ପ୍ରକାଶ କରିବୁ ତାହା ଜାଣି ପାରୁନାହୁଁ । ତୁମେ ଜାଣିନାହଁ ଆମ୍ଭମାନଙ୍କ ବଳବୀର୍ଯ୍ୟ । ମହିଷାସୁରର କି ଶକ୍ତି ଅଛି ଆମ ପାଖରେ ? ସେ ଦିଗ୍‌ବିଜୟ କରିବାକୁ ଆସି ଅତି ଶୋଚନୀୟ ଭାବରେ ଆମଠାରୁ ପରାସ୍ତ ହୋଇଛି । କେବଳ ଲୋକେ ତା ଆମଠାରୁ ବୟୋଜ୍ୟେଷ୍ଠ ବୋଲି ତାକୁ ଟିକିଏ ଯାହା ସମ୍ମାନ ଦେବା କଥା ।

ନିଶୁମ୍ଭ ନିଜ ବିଷୟରେ କହିବାକୁ ଯାଇ କହିଲା, ଚନ୍ଦ୍ରଭାଗା ଯେଉଁଠି ମହୋଦଧିରେ ପଡ଼ୁଛି ସେହିଠାରେ ଆମେ ଦୁଇଭାଇ ଲୌହଚୂର୍ଣ୍ଣ ଭକ୍ଷଣ କରି ଦୀର୍ଘ ଏକ ସହସ୍ର ବର୍ଷ ବ୍ରହ୍ମାଙ୍କୁ ତପସ୍ୟା କଲୁ । ପାଷାଣ ଏକଧାରରେ ବସିବା ଦ୍ୱାରା ଉଇମାନେ ଆମକୁ କାଠ ଭାବି ଆମ ଉପରେ ହୁଙ୍କା ତିଆରି କରିଦେଲେ । ତଥାପି ଆମେ ନିଶ୍ଚଳ ହୋଇ ବସି ବ୍ରହ୍ମାଙ୍କୁ ଧ୍ୟାନ କଲୁ । ଏହିଭଳି ନବସହସ୍ର ବର୍ଷ ଗତ ହୋଇଗଲା । ଶେଷରେ ଉପସ୍ଥିତ ହେଲେ ବ୍ରହ୍ମା ଆମକୁ ବର ପ୍ରଦାନ ନିମିତ୍ତ । ସେ ତାଙ୍କ କମଣ୍ଡଳୁ ଜଳରେ ଆମକୁ ପ୍ରକୃତିସ୍ଥ କରାଇ ନିଜକୁ ବ୍ରହ୍ମା ବୋଲି ପରିଚୟ ଦେଲେ । ଆମେ ତାଙ୍କୁ ପ୍ରଥମେ ସତ୍ୟ କରାଇଲୁ । ସେ କମଣ୍ଡଳୁ ବାରି ହାତରେ ଧରି ସତ୍ୟ କଲେ ଆମେ ଯାହା ବର ମାଗିବୁ ତାହା ସେ ଆମକୁ ଦେବେ ।

ଆମ୍ଭେ ବରମାଗିଲୁ, ଯୁଗ ଯୁଗ ଧରି ଆମର ଏ ଦେହ ରହିଥିବ । ପ୍ରଳୟ ଆସିଲେ ମଧ୍ୟ ସେ ପ୍ରଳୟରେ ଆମ୍ଭର କିଛି ହେବ ନାହିଁ । କୋଟି କଳ୍ପ ଗଲେ ମଧ୍ୟ ଆମ୍ଭେ ସେହିଭଳି ରହିଥିବୁ ।

ପିତା ବ୍ରହ୍ମା ତଥାସ୍ତୁ କହି ଆହୁରି ଅଧିକ ବରଦାନ କଲେ, ଲକ୍ଷକୋଟି ସିଂହର ପରାକ୍ରମ ବହି ଯୁଗ ଯୁଗ ଧରି ତମେ ବଞ୍ଚିରହିବ ।

ସେହି କୋଟି ବର୍ଣ୍ଣର ସୌନ୍ଦର୍ଯ୍ୟମୟୀ ନାରୀ ନିଶୁମ୍ଭର କଥା ଶୁଣି ମୁଖରେ ବିସ୍ମୟ ପ୍ରକାଶ କରି କହିଲେ, ତାହାହେଲେ ତ ତୁମକୁ ବିବାହ କରି

ମୋତେ ସପତଣୀ ହବାଥିର ସମ୍ମୁଖୀନ ହେବାକୁ ହେବ । ତୁମେ ବୁଢ଼ା ଯେତେବେଳେ ଅନନ୍ତକାଳ ପର୍ଯ୍ୟନ୍ତ ବଞ୍ଚିରହିବ, ସେତେବେଳେ ମୁଁ ତ ଆଉ ସେହିଭଳି ବଞ୍ଚି ପାରିବ ନାହିଁ ? ମୋ ଉପରେ ଯେତେବେଳେ ବାର୍ଦ୍ଧକ୍ୟ ନଇଁ ଆସିବ, ସେତେବେଳେ ତୁମେ ବର୍ତ୍ତମାନ ପରି ଯୁବକ ହୋଇ ରହିଥିବୁ । ତେଣୁ ସମ୍ଭୋଗ ନିମିତ୍ତ ତୁମେ ବହୁ କାମିନୀଙ୍କ ସଙ୍ଗ ଇଚ୍ଛାକରିବ ତେଣୁ ମୋର ବାର୍ଦ୍ଧକ୍ୟ ଜୀବନରେ ଶାନ୍ତି ଟିକିଏ ନ ପାଇ ବଡ଼ ହିଂସୁଣି ହୋଇ ମରିଯିବି ପିନା !

ସେହି ଅପୂର୍ବ ସୁନ୍ଦରୀ ଦେବୀଙ୍କୁ ଆଉ ଅଧିକ କହିବାକୁ ନ ଦେଇ ଶୁମ୍ଭ କହିଲି, ନା ନା ଆମର ମୃତ୍ୟୁ ଅଛି । କିନ୍ତୁ ସେ ମୃତ୍ୟୁ ଅନ୍ୟ କାହାଦ୍ୱାରା ନୁହେଁ । ସ୍ୱ ଇଚ୍ଛାରେ ଆମେ ମୃତ୍ୟୁ ବରଣ କରିବୁ ।

ବରପାଇ ଆମେ ଯେତେବେଳେ ଉନ୍ନତ ଶିର ହୋଇ କୁଳବର୍ଷ ଅଭି-ମୁଖେ ଆସୁଥିଲୁ । ସେହି ସମୟରେ ପଥମଧ୍ୟରେ ଜଣେ ରୋଗକ୍ଲିଷ୍ଟ କ୍ଷୀଣ ଶରୀର ବ୍ୟକ୍ତିକୁ ଦେଖିବାକୁ ପାଇଲୁ । ସେ ପଥଧାରରେ ପଡ଼ି ରୋଗଯନ୍ତ୍ରଣାରେ ଅତି ଛଟପଟ ହେଉଥିଲି । ଆମେ ଦୁଇଭାଇ ତାକୁ ଦେଖି ନିକଟରେ ଥିବା ସରୋବରରୁ ଜଳ ଆଣି ତା ମୁଖରେ ଦେଲୁ । ସେ କିଏ, କାହିଁକି ଏଠାରେ ପଡ଼ି ଛଟପଟ ହେଉଛି ବୋଲି ପ୍ରଶ୍ନ କରନ୍ତେ ବହୁ କଷ୍ଟରେ ସେ କହିଲା, ମୁଁ ଅନନ୍ତ ଦେଶର ରାଜା ହିରାକାର ନୃପତିଙ୍କ ପୁତ୍ର । ବ୍ରହ୍ମାଙ୍କୁ ଦୀର୍ଘଦିନ ତପସ୍ୟା ଦ୍ୱାରା ସନ୍ତୁଷ୍ଟ କରି ବର ପାଇଥିଲି, କଳ୍ପ କଳ୍ପ ଯୁଗ ଧରି ମୁଁ ବଞ୍ଚିରହିବି । ମୋର ସମକକ୍ଷ ଯୋଦ୍ଧା ଏ ମହୀମଣ୍ଡଳରେ କେହି ନାହାନ୍ତି । ଏପରିକି ହରିହର ବ୍ରହ୍ମା ମୋ ସହିତ ଯୁଦ୍ଧ କଲେ ମଧ୍ୟ ପରାସ୍ତ ହେବେ । ମୋର ଦେହ ବଜ୍ରଭଳି କଠିନ ହେବ ଏବଂ କୌଣସି ଦେବ ଅସ୍ତ୍ର ମୋ ଶରୀର ଭେଦ କରିପାରିବ ନାହିଁ । କିନ୍ତୁ ବରପାଇ ଫେରିବାର ଛ ମାସ ମଧ୍ୟରେ ମୁଁ ଏଭଳି ରୋଗକ୍ଲିଷ୍ଟ ହୋଇଗଲି ଯେ ଶେଷରେ ଏହିଭଳି ଅବସ୍ଥାରେ ନିଃସହାୟ ହୋଇ ରାସ୍ତା କଡ଼ରେ ପଡ଼ି ରହିଛି । ଏହି କଥା କହୁ କହୁ ତାର ନିଃଶ୍ୱାସ ଊର୍ଦ୍ଧ୍ୱଗତ ହେବାକୁ ଲାଗିଲା ଏବଂ ଖୁବ୍ ଅଳ୍ପ ସମୟ ମଧ୍ୟରେ ଆମର ଉପସ୍ଥିତିରେ ଇହଲୀଳା ସମ୍ବରଣ କଲା ।

ଏହି ଘଟଣାରେ ଆମେ ଦୁଇଭାଇ ଏଭଳି ବ୍ୟତିବ୍ୟସ୍ତ ହୋଇ ପଡ଼ିଲୁ, ଯଦ୍ୱାରା ବ୍ରହ୍ମାଙ୍କ ବର ପ୍ରତି ଆସ୍ଥା ରହିଲା ନାହିଁ । ବହୁ ସମୟ ଭାବିଚିନ୍ତି ଶେଷରେ ସ୍ଥିର କଲୁ ଚାଲି ଯିବା, ପୁନର୍ବାର ତପସ୍ୟା କରି ଏଥିର କାରଣ ବ୍ରହ୍ମାଙ୍କୁ ଜିଜ୍ଞାସା କରିବା ।

ଦୁହେଁ ଦୀର୍ଘଦିନ ତପସ୍ୟା ପରେ ଯେତେବେଳେ ବ୍ରହ୍ମାଙ୍କ ସାକ୍ଷାତ ନ ପାଇଲୁ, ସେତେବେଳେ ଆକ୍ରମଣ କଲୁ ସ୍ୱର୍ଗ ରାଜ୍ୟ । ବ୍ରହ୍ମାଙ୍କ ଅପର୍ଯ୍ୟାପ୍ତ ବରରେ ବଳୀୟାନ ହୋଇଥିବା ଯୋଗୁ ଇନ୍ଦ୍ରାଦି ଦେବଗଣ ଆମ ଆକ୍ରମଣରେ ବ୍ୟତିବ୍ୟସ୍ତ ହୋଇ ପଳାୟନ କଲେ । ପରିଶେଷରେ ବ୍ରହ୍ମା ଆସିଲେ ଆମର ମୁକାବିଲା କରିବାକୁ । କିନ୍ତୁ ତାଙ୍କରି ବରରେ ଆମେ ବଳୀୟାନ । ତେଣୁ ଆମ ଖଡ଼୍‌ଗ ପ୍ରହାରରେ ସେ ଅସାଷ୍ଟୁମ ହୋଇ ପଡ଼ିଗଲେ । ତାର କ୍ଷଣକାଳ ପରେ ସେ ମୋହ ତେଜି ଆମକୁ କହିଲେ, ଆରେ ମୂର୍ଖ, ତୁମେ ମୋର ବରରେ ବଳୀୟାନ ହୋଇ ମୋତେ ବଧିପାରିଲ ନାହିଁ । ତୁମେ ଯେଉଁ କରରେ ଖଡ଼୍‌ଗ ଧରି ପ୍ରହାର କଲ ସେହି କର ଯେତେବେଳେ ପରସ୍ପର ଶିରରେ ଦେବା ସେତେବେଳେ ତୁମର ମୃତ୍ୟୁ ଘଟିବ ।

ଦେବୀ ହାତ ହଲାଇ କହିଲେ ଏତେବଡ଼ ଗୁପ୍ତ କଥା ତୁମେ ଆଜିଦିନେ ଯେପରି କାହା ଆଗରେ ନ କୁହ । ମୁଁ କଣ ରହିଥିଲି ତୁମେ କିପରି ମରିବ ତାହା ଶୁଣିବା ପାଇଁ । ଶୁମ୍ଭାସୁର କହିଲା ସେଥିରେ କଣ ଅଛି ? ଶାସ୍ତ୍ରରେ ଲେଖା ଅଛି ପରା—

ସୁନ୍ଦରୀ ସ୍ତ୍ରୀ ସୁଦେବତା ଯେ ସୁଜନ ବ୍ରାହ୍ମଣ
ସ୍ୱରୂପକୁ କହନ୍ତି ଏ ନ କରି ଗୋପନ ॥

ଠିକ ଠିକ ହୋଇ ହସି ଉଠିଲେ ସେହି ଦେବୀ । ହସି ହସି କହିଲେ ମୁଁ ଜାଣେ ତୁମେ ଦୁହେଁ ଯେଉଁଭଳି ବୀର ସେହିଭଳି ପଣ୍ଡିତ । ତୁମଭଳି ଲୋକର ହାତ ଧରିଲେ ଜୀବନରେ ଦୁଃଖ ନାହିଁ । ସେଥିପାଇଁ ଖାଲି ଟିକିଏ ପରୀକ୍ଷା ଦେଲି ପିନା !

ତାଙ୍କର ସମ୍ପତ୍ତି ସୂଚକ କଥା ଶୁଣି ଶୁଣି ଦୁଇଭାଇ କୃତ୍ୟା କୃତ୍ୟା ହୋଇ ଗଲେ । ତାଙ୍କର ମନେ ହେଲା ବାମନ ହୋଇ ସ୍ୱର୍ଗର ଚନ୍ଦ୍ରକୁ ଯେପରି ହାତ ପାଖରେ ପାଇଛନ୍ତି । ଶୁମ୍ଭାସୁର ଟିକିଏ ମିନତିଭରା କଣ୍ଠରେ କହିଲା, ଯେତେ-ବେଳେ ଆମଠାରେ ତୁମର ଶ୍ରଦ୍ଧା ବଳିଛି ସେତେବେଳେ ତୁମେ ନିଶ୍ଚୟ ଆମ ଭାରିଯା ହେବ ।

ଦେବୀ କୋମଳ କଣ୍ଠରେ କହିଲେ, ତୁମେ ଦୁହେଁ ମୋତେ କଥା କେଇ ପଦରେ ବଶ କରିଦେଲ । ମୁଁ ଆସିଥିଲି ଏ ରାଜ୍ୟର ରାଜାଙ୍କ ପାଖକୁ । ମାତ୍ର ବର୍ତ୍ତମାନ କେବଳ ତୁମ ଦୁହିଁଙ୍କର ଭାରିଯା ହେବା ଛଡ଼ା ଆଉ ଅନ୍ୟ କଥା ଭାବୁ ନାହିଁ । ମୋର ବନ୍ଧୁ ବାନ୍ଧବ ସଖୀ ସୋଦର ସମସ୍ତଙ୍କ କଥା ଭୁଲି ତୁମଙ୍କୁହିଁ ମୋର ସର୍ବସ୍ୱ ବୋଲି ଧାରଣା କରି ନେଲି । ଧନ ବସନ ମୋର ବା କଣ ହେବ । କିନ୍ତୁ ଅନେକ ଦିନରୁ ମୁଁ ଇଚ୍ଛା କରିଥିଲି ଟିକିଏ ନୃତ୍ୟ ଦେଖିବାକୁ । ତୁମେ ତ ସକଳ ଶାସ୍ତ୍ରରେ ପଣ୍ଡିତ, ନୃତ୍ୟ ଶାସ୍ତ୍ର ନିଶ୍ଚୟ ଜାଣିଥିବ ।

ଦେବୀଙ୍କ ମୁହଁରୁ କଥା ସରୁ ନ ସରୁଣୁ ଦୁଇଭାଇ କହି ଉଠିଲେ, ଏକୋଇଶି ମୂର୍ଚ୍ଛନା, ପଞ୍ଚତାଳ, ହରଭର, ତାଣ୍ଡବାଦି ନୃତ୍ୟ ସକଳ ଆମେ ଜାଣୁ । ନୃତ୍ୟରସରେ ପରା ଆମେ ଜଗତ୍‌ଗୁରୁଙ୍କୁ ବିମୋହିତ କରିଥିଲୁ । ସ୍ୱର୍ଗର କୌଣସି ବିଦ୍ୟାଧର ଅପ୍‌ସରା ଆମ ଭଳି ନାଚିପାରିବେନି ।

ଶୁଣି ଶୁଣି ଦେବୀ କହିଲେ, ତୁମେ ତାଣ୍ଡବ ନୃତ୍ୟ ଜାଣିଛ ? ମୋର ଧାରଣା କେବଳ ଶିବଙ୍କ ଛଡ଼ା ଅନ୍ୟ କେହି ସେ ନୃତ୍ୟ ଜାଣନ୍ତି ନାହିଁ । ଆଗୁ ଆରମ୍ଭ କରି ତାଣ୍ଡବ ନୃତ୍ୟ କିପରି ?

ରାକ୍ଷସ ଦୁହେଁ ହସି ହସି କହିଲେ, ତାଂଡବ ନୃତ୍ୟ ତ ! ହେଇ ଦେଖ ଆମେ ନାଚୁଛୁ । ଦେବୀଙ୍କ ରୂପରେ ଦୁହେଁ ମୁଗ୍ଧ—ପ୍ରେମ ପାଗଳର ଭଲ ମନ୍ଦ ବିଚାର କାହିଁ ? ସେମାନେ ଦେବୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ଆରମ୍ଭ କରିଦେଲେ ନୃତ୍ୟ । ଗୁଣ୍ଡିପୁଟ ଗୁଣ୍ଡିପୁଟ ଭଙ୍ଗିରେ ଭରଭର କଳାରେ

ପାଦକୁ ଝୁମ ଝୁମ କରି ନାଚି ଉଠିଲେ ଦୁହିଁଭାଇ । ଏକ ଧ୍ୟାନରେ ଦେବୀ ଅନାଇ ରହିଥାନ୍ତି ତାଙ୍କ ନୃତ୍ୟକୁ । କେତେବେଳେ ସେମାନେ ପାଦ ଦୁଇଟିକୁ ଉପରକୁ ଟେକି, ହାତ ଦୁଇଟିକୁ ବିଭିନ୍ନ ଭଙ୍ଗି କରି ନାଚିଗଲାବେଳେ ଦେବୀ କରତାଳି ଦେଇ ପ୍ରଶଂସା କରନ୍ତି ଦୁହିଁଙ୍କର ନାଚକୁ । ଦୁହେଁ ଲଜ୍ଜା ସଙ୍କୋଚ ସବୁ ଛାଡ଼ି ଧାରଣା ମୂର୍ଚ୍ଛନାରେ ଦେବୀଙ୍କ ମନକୁ ତୋଷିବାକୁ ଲାଗିଗଲେ । ଧ୍ରୁଆଁ, ମଠା, ଚେନ୍ଦୁ କ୍ଷେପା ବଡଟେରତାଳ, ଝୁମ୍ପା, ପ୍ରବନ୍ଧନୀ, ଏକତାଳ, ପାରି ଆଦିରେ ନାଚି ବୁଲୁଥାନ୍ତି ସେ ଦୁହେଁ । ଶୃଙ୍ଗାର, ବୀର, କରୁଣ, ଅଦ୍ଭୁତ, ହାସ୍ୟ, ଭୟ ଏହି ଷଡରସ ତାଙ୍କ ନୃତ୍ୟରେ ବେଶ୍ ଉତ୍ଫୁଲ୍ଲ ହୋଇ ଫୁଟିଉଠୁଥାଏ । ଦେବୀ ଠୋ ଠୋ ହୋଇ ହସି ଉଠିବା ଦେଖି ଦୁହେଁ ଅଧିକ ନାଚୁଥାନ୍ତି । ବାହାବାପାଇଁ ତାଙ୍କର ଯେଉଁ ପ୍ରାଣମୂର୍ଚ୍ଛା ଉଦ୍ୟମ ତାହା ଅନ୍ୟ କାହାପାଖରେ ପ୍ରଶଂସିତ ହେଉ ବା ନ ହେଉ ଯାହା ପାଇଁ କରୁଛନ୍ତି ସେ ଯେ ଆନନ୍ଦିତ ଏହା ତାଙ୍କ ପାଖରେ ଯଥେଷ୍ଟ । ଯୁଗ ଯୁଗ ଧରି ନାରୀର ମନତୋଷିବାକୁ ପୁରୁଷ ଯେଉଁ ପ୍ରଚେଷ୍ଟା କରିଥାଏ ସେଥିରୁ ସେମାନେ ବହିର୍ଗତ ହେବେ କିପରି ? ଯେ ବୀର, ସେ ମଧ୍ୟ ଶ୍ରେଷ୍ଠ ନର୍ତ୍ତକ ହୋଇପାରେ ଏହା ମହାଦେବ ପ୍ରମାଣ କରିଦେଇଛନ୍ତି ।

ନାଚୁ ନାଚୁ ଦେବୀ ନୃତ୍ୟର ପରିହାସ କରି ବସନ୍ତି । ଦେବୀଙ୍କ ତୁଣ୍ଡରୁ କଥା ବାହାରୁ ନ ବାହାରୁଣୁ ବୀର ଦୁହେଁ ନାଚି ଉଠନ୍ତି ସେହି ଭଙ୍ଗିରେ । ଦେବୀ ମିନତି କଲେ ଜଣଙ୍କ ଶିରରେ ଅନ୍ୟଜଣଙ୍କ ହାତ ଦେଇ ଓ ଦୁହେଁ ଦୁହିଁଙ୍କ ଶିରରେ ହାତ ଦେଇ ଠିକଏ ନାଚିବାକୁ । ପରମାସ ମାତ୍ରେ ଆରମ୍ଭ ହେଲା ସେ ନୃତ୍ୟ । ପରସ୍ପର ଶିରରେ ହାତ ଦେଲା ମାତ୍ରେ ଦୁହିଁଙ୍କ ଦେହରୁ ଧୂମ ନିର୍ଗତ ହେବାକୁ ଲାଗିଲା । ଶୂନ୍ୟରେ ଦେଖାଦେଲା ଶତ ଅସନିର ଝଲକ । ଏକ ସମୟରେ ଶତ ବଜ୍ରପାତର ଶବ୍ଦରେ ରତ୍ନଗିରି ପ୍ରକମ୍ପିତ ହୋଇଗଲା ।

ମହିଷାସୁରର ଦୁଇଜଣ ଉଗ୍ରବୀ ଜାଳ ବିକାଳ ସମସ୍ତଙ୍କ ଅଲକ୍ଷରେ ଏକ ଉଣ୍ଡାରି ବୃକ୍ଷର ଉହାଡରେ ରହି ଏ ସବୁ ଲକ୍ଷ୍ୟ କରୁଥିଲେ । ସେମାନେ ଚକ୍ଷୁ ବନ୍ଦ କରିଦେଲେ ଶତ ଅଶନିର ଆଲୋକକୁ ସହ୍ୟ କରି ନ ପାରି । ତା

ପରେ ଶତ ବଜ୍ରପାତର ଉପୁଙ୍କର ଶବ୍ଦ । ସ୍ୱଷସ ହେଲେମଧ୍ୟ ସେମାନେ ମନେକଲେ ସତେଯେପରି ସେ ଶବ୍ଦରେ ତାଙ୍କ କାନ ଫାଟି ପଡ଼ିବ । ଉପୁରେ ଦୁଇହାତରେ ଚିପିଧରିଲେ ଦୁଇକାନର ରନ୍ଧ୍ରକୁ ।

ଯେତେବେଳେ ସେମାନେ ଆଖିଖୋଲିଲେ, ସେତେବେଳେ ଦେଖିବାକୁ ପାଇଲେ ଶୁମ୍ଭ ନିଶୁମ୍ଭ ଧୂମ ହୋଇ ଶୂନ୍ୟରେ ମିଶି ଯାଉଛନ୍ତି ଏବଂ ସେହି ଅପୂର୍ବ ସୌନ୍ଦର୍ଯ୍ୟମୟୀ ନାରୀର ମୁଖରେ କୁଟିଳହାସ୍ୟର ଏକ କ୍ଷୀଣରେଖା ଉଦ୍ରେକ ହୋଇ ଲିଭିଆସୁଛି ।

ଆଶ୍ଚର୍ଯ୍ୟ ହୋଇ ସେମାନେ ସେମାନଙ୍କ କାନ ଦୁଇଟିରୁ ହାତକୁ ଯେତେବେଳେ ଦୂରେଇ ନେଲେ, ସେତେବେଳେ ଶୁଣିବାକୁ ପାଇଲେ ସ୍ୱର୍ଗର ଅମରମାନେ ଆନନ୍ଦିତ ହୋଇ ଦେବୀଙ୍କ ଉଦ୍ଦେଶ୍ୟରେ ଗାଉଛନ୍ତି—

ଜୟ ତୁ କାତ୍ୟାୟିନୀ ଗୋ ଜୟ ଚଣ୍ଡୀ ଦୁର୍ଗେ
ତୋହର ଦର୍ଶନେ ଯମ ଦଣ୍ଡ ଗୋ ନଲଗେ
ସହସ୍ର ଭୁଜେ ସହସ୍ରେ ଅସ୍ତ୍ର ଅଛୁ ଧରି
ଜଗଜ୍ଜନ ମୋହିନୀ ଗୋ କ୍ଲେଶ ତୁ ନିବାରି ॥
ଯାହା ନାମ ଶ୍ରବଣେଣ ଖଣ୍ଡେ ଯମ ଦଣ୍ଡ
ଯାହାନାମ ସୁମରନ୍ତେ ବନ୍ଧ ହୁଏ ଖଣ୍ଡ ॥
ଯାହାନାମ ସୁମରନ୍ତେ ଲକ୍ଷ୍ମୀ ହୋଇ ପ୍ରାପ୍ତ
ଯାହାନାମ ଭଜନ୍ତେଣ ଆୟୁଷ ବର୍ଦ୍ଧିତ ॥
ଦେବତାଙ୍କର ଉତ୍ପାତ ଖଣ୍ଡିଲ ଅଭୟେ
ସମସ୍ତଙ୍କର ଆପଦ ଖଣ୍ଡ ମହାମାୟେ

ଏହି ଗଳ୍ପଟି ଓଡ଼ିଶାର ଆଦିକବି ଶାରଳା ଦାଶଙ୍କ ଚଣ୍ଡୀପୁରାଣରୁ ଗୃହୀତ । ବ୍ରହ୍ମାଙ୍କ ଠାରୁ ବରପାଇ ଶୁମ୍ଭ ନିଶୁମ୍ଭ ଫେରିଲା ବେଳେ ବହନ୍ତା-

ପୁରୁଷଙ୍କ ମାୟାରେ ପଡ଼ି ପ୍ରତାରିତ ହେଲେ ଓ ତା ପରେ ସେମାନେ ବ୍ରହ୍ମାଙ୍କୁ ତପସ୍ୟା କଲେ ଓ ପରେ ସ୍ୱର୍ଗ ଆକ୍ରମଣ କଲେ । ପରିଶେଷରେ ଦେବୀ ଦୁର୍ଗାଙ୍କଦ୍ୱାରା ନିହତ ହେଲେ । ଦେବୀଦୁର୍ଗା ଆଶ୍ୱିନ କୃଷ୍ଣାଷ୍ଟମୀ ଦିନ ଅଗ୍ନିରୁ ଉତ୍ପନ୍ନ ହେଲେ ଓ ଶୁକ୍ଳାଷ୍ଟମୀରେ ଦୁର୍ଗାଙ୍କ ଦ୍ୱାରା ବଧ ହେଲେ ବୋଲି ଶାରଳା ଉଲ୍ଲେଖ କରିଛନ୍ତି । ତେଣୁ ଓଡ଼ିଶାରେ ଦୁର୍ଗାପୂଜା ଷୋଳଦିନବ୍ୟାପୀ ହୋଇ ଥାଏ । ଷୋଳଦିନ ବ୍ୟାପୀ ଦୁର୍ଗାପୂଜା ଓଡ଼ିଶା ବ୍ୟତୀତ ଆଉ କେଉଁଠି ହୁଏନାହିଁ ।



# ବିଜୟିନୀ

ଆସ୍ଥାନେ ବିଜେ କରିଛନ୍ତି ମହିଷାଦର୍ପିଷ୍ଠ । ସେ ଆଜି ଚିନ୍ତାକୁଳ । ତାର ସେନାପତିମାନେ ଇନ୍ଦ୍ରଧାମ ତ୍ୟାଗ କରି ଚାଲି ଯାଇଛନ୍ତି । ଏକଦା ଚଣ୍ଡ ମୁଣ୍ଡ ଚାଲି ଯାଇଥିଲେ ମୃଗୟା ନିମନ୍ତେ । ଦେଖିଲେ ନଦୀରେ ଭାସି ଯାଉଛି ଏକ ହେମପଦ୍ମ । ତାର ସୁଗନ୍ଧରେ ଚତୁର୍ଦ୍ଦିଗ ମହକୁଛି । ଆଶ୍ଚର୍ଯ୍ୟ ହେଲେ ଦୁଇ-ଭାଇ । ସେହି ହେମପଦ୍ମ ପଛେ ପଛେ ଯାଇ ସେମାନେ ଭେଟିଲେ ପର୍ବତ ଉପରେ ଏକ ଅପୂର୍ବ ସୁନ୍ଦରୀ କନ୍ୟାକୁ, ସେ କିଏ, ଏହା ଜାଣିବା ପାଇଁ ତାଙ୍କୁ ପୃଚ୍ଛା କରନ୍ତେ ସେହି ଅପରୂପା ବିଶ୍ୱମୋହିନୀ କହିଲେ, "ମୋର ପିତାଙ୍କର ନାମ ହୁତାଶନ । ଅଣାକାର ଅଗ୍ନିଙ୍କର ମୁଁ କନ୍ୟା । ଯୁଗେ ଯୁଗେ ମୁଁ ନିରାକାର ଗୋପ୍ତୀ । ପରମ ଦୈବତ ମୋର ସ୍ୱାମୀ । ମୋର ଦୁଷ୍ଟ ପ୍ରକୃତି ଯୋଗୁ ସ୍ୱାମୀଙ୍କୁ ମୁଁ ଭକ୍ତି କରେ ନାହିଁ । ଏପରିକି ଗୋଟିଏ ରାତି ବି ସ୍ୱାମୀ ସହିତ କଟାଇ ନାହିଁ । ତେଣୁ ସ୍ୱାମୀ ବିମୁଖ ହୋଇ ମୋତେ ତ୍ୟାଗ କରିଛନ୍ତି ।" ସେହିଠାରେ ଚଣ୍ଡ ମୁଣ୍ଡ ପ୍ରସ୍ତାବ ଦେଲେ ମହିଷାସୁରଙ୍କୁ ବିବାହ ନିମିତ୍ତ । ସମ୍ମତି ପ୍ରକାଶ କଲେ ଦେବୀ ନିରାକାର ଗୋପ୍ତୀ । ଶିବ ସୁମରି ରାକ୍ଷସ ଦ୍ୱୟ ପବନଠୁଁ ବେଗେ ଧାଇଁଲେ ମହିଷା ନିକଟକୁ । ଚଣ୍ଡମୁଣ୍ଡ ମହିଷା ନିକଟରେ ଦେଖି ଆସିଥିବା ଦେବୀଙ୍କର ସ୍ୱରୂପ ଯେଉଁଭଳି ଭାବରେ ବର୍ଣ୍ଣନା କଲେ ତାହା ଶ୍ରବଣ କରି ମହିଷା କାମେ ଅସାଷ୍ଟମ ହୋଇ ପଡ଼ିଲା । ଶୀଘ୍ର ସେହି ଅପରୂପା ନାରୀକୁ ତା ନିକଟକୁ ନେଇ ଆସିବାକୁ ଚଣ୍ଡମୁଣ୍ଡଙ୍କୁ ପ୍ରେରଣ କଲା । ମା[illegible] ଦେବୀ ଚଣ୍ଡମୁଣ୍ଡଙ୍କ ସହିତ ଆସିବାକୁ ନାସ୍ତି କଲେ । ଦେବୀ କହିଲେ, ମହିଷାସୁର ସୈନ୍ୟ ବଳ ଧରି ତାଙ୍କ ନିକଟକୁ ଆସିଲେ ସେ ତାକୁ ଦେଖନ୍ତେ ଏବଂ ମହିଷା ଦେବୀଙ୍କୁ ଦେଖନ୍ତା । ଉଭୟେ ଉଭୟଙ୍କୁ ଦେଖି ରୁଚି ସ୍ଥିର କଲେ ସମ୍ପର୍କ ଚିରସ୍ଥାୟୀ ହୁଅନ୍ତା । ଦେବୀଙ୍କର ଏହି କଥା ଚଣ୍ଡମୁଣ୍ଡ

ମହିଷା ନିକଟକୁ ଯାଇ ସେବା କରନ୍ତେ; ମହିଷା ଦେବୀଙ୍କର ଏ ପ୍ରସ୍ତାବରେ ରାଜି ହେଲା ନାହିଁ ଏବଂ ଆଦେଶ ଦେଲା, ଯଦି ସ୍ୱଇଚ୍ଛାରେ ସେ ନ ଆସେ ତେବେ ତାଙ୍କର କେଶ ଧରି ନେଇ ଆସ ।

ଚଣ୍ଡମୁଣ୍ଡଙ୍କ ନିକଟରୁ ମହିଷାସୁରର ଆଦେଶ ଶୁଣି ଦେବୀ କ୍ରୋଧିତ ହୋଇ କହିଲେ, "ଆରେ ପାମର, ଧର୍ମ ଲଙ୍ଘିଲେ, ତୁମ ମୃତ୍ୟୁ ଅନିବାର୍ଯ୍ୟ । ତୁମେ ମୋତେ ମନେ କରନ୍ତି ମୁଁ ଜଣେ ସାମାନ୍ୟା । ମୁଁ ବିଶ୍ୱ ମାତାଙ୍କ ଶକ୍ତି ।" ଦେବୀଙ୍କ ମୁଖରୁ ଏପରି କ୍ରୋଧବାଣୀ ଶୁଣି ରାକ୍ଷସଦ୍ୱୟ ଦେବୀଙ୍କ ସମୀପକୁ ଧାବିତ ହୋଇ କେଶାକର୍ଷଣ କରିବାକୁ ହାତ ବଢାଇଲେ । 'ହୁଁ' କାର ଗର୍ଜନ କରି ଉଠିଲେ ମହାଦେବୀ । ସେହି ମହାଗର୍ଜନରୁ କାଳାନଳ ବୃଷ୍ଟି ହେବାକୁ ଲାଗିଲା । ସ୍ତବ୍ଧ ହେଲା ସଚରାଚର ବିଶ୍ୱ, ସେହି ହୁଁକାର ନାଦରେ । ସହ୍ୟ କରି ପାରିଲେ ନାହିଁ ଦାନବଦ୍ୱୟ ସେହି ନୃସୁଙ୍କର ଶବ୍ଦ । ମୁହୂର୍ତ୍ତକ ମଧ୍ୟରେ ଟଳି ପଡିଲେ ଭୂମିପରେ । କୋପାନ୍ୱିତା ହୋଇ ଦେବୀ ମହାକାୟ ବିସ୍ତାର କଲେ । ସେହି କାୟାରୁ ଦୁଇ ଦେବୀ ଆବିର୍ଭୂତା ହେଲେ । ଆକାଶରେ ଓଷ୍ଠ, ପାତାଳରେ ତାଙ୍କ ଜିହ୍ୱା । ଅଷ୍ଟଭୁଜରେ ବିବିଧାୟୁଧ ଶୋଭିତ । ଏହି ଦେବୀ ଦ୍ୱୟଙ୍କର ନାମ ଛାୟା ଆଉ ମାୟା । ମହାଦେବୀ ଦୁର୍ଗାଙ୍କ ଆଦେଶରେ ଦେବୀଦ୍ୱୟ ଚଣ୍ଡ ଓ ମୁଣ୍ଡଙ୍କ ସହିତ ଆସିଥିବା ସୈନ୍ୟ ବଳ ଝିଙ୍ଗିକାକୁ ବଣି ଖାଇଲା ଭଳି ଖାଇ ଶେଷ କରିଦେଲେ ।

ଚଣ୍ଡ ଓ ମୁଣ୍ଡଙ୍କ ବଧ ସମ୍ବାଦ ଦୈତ୍ୟରାଜ ମହିଷାସୁର ସହି ପାରିଲା ନାହିଁ । ତେଣୁ ସେ ମହାବୀର ଶୁମ୍ଭ ନିଶୁମ୍ଭଙ୍କୁ ସେହି ଅପରାଧୀ ନାରୀଙ୍କ ଆନୟନ ନିମିତ୍ତ ପଠାଇଲା ।

(ରାଜାଙ୍କ କଥାକୁ କେବେ ଅବହେଳା କରିବା କଥା ନୁହେଁ ।) ଶୁମ୍ଭ ନିଶୁମ୍ଭ ଭୀଷଣ ବଳଶାଳୀ । ନିଜେ ମହିଷାସୁର ତାଙ୍କ ସହିତ ଯୁଦ୍ଧ କରି ପରାସ୍ତ ହୋଇଥିଲା । ମାତ୍ର ରତ୍ନଗିରି ଉପରେ ଉପବେଶନ କରିଥିବା ଦେବୀ ଦୁର୍ଗା ଗୁପ୍ତରେ ବିଷ୍ଣୁ ଦ୍ୱୟଙ୍କ ମୃତ୍ୟୁଭେଦ ଜ୍ଞାତ ହୋଇ କଞ୍ଚିତ କର୍ମରେ ତାଙ୍କୁ ବଧ କଲେ । କାଳ ବିକାଳ ନାମକ ଚରଙ୍କ ମୁଖରୁ ମହିଷାସୁର ସମ୍ବାଦ ପାଇ

ଶୁମର ବେମକଙ୍କୁ ଦୁର୍ଗାଙ୍କ ପାଖକୁ ପଠାଇଲା ଓ ସେମାନେ ମଧ୍ୟ ଦେବୀଙ୍କ ହାତ୍ରେ ବଧ ହେଲେ । ତତ୍ପରେ ଗଲେ କାନ୍ତମାଳୀ ବିଡ଼ାଳାକ୍ଷ, ରକ୍ତବୀର୍ଯ୍ୟ, ଧୂମ୍ରାକ୍ଷ, କାଳଦଣ୍ଡ ଆଦି ବୀର । ସେମାନେ ଦୁର୍ଗା ବିଜେ କରିଥିବା ରତ୍ନଗିରିକୁ ଘେରିଗଲେ ଦେବୀଦୁର୍ଗାଙ୍କୁ ବଧ କରିବା ନିମିତ୍ତ । ଅପର୍ଯ୍ୟାପ୍ତ ରାକ୍ଷସ ସେନା ଦେଖି ମହାଦେବୀ ନିଜ ଶରୀର ମଧ୍ୟରୁ ଚଉଷଠି ଯୋଗିନୀ ଜନ୍ମ କଲେ ।

ନାରାୟଣୀ, ବ୍ରହ୍ମାଣୀ, ମାହେଶ୍ୱରୀ, ଇନ୍ଦ୍ରାଣୀ ଆଦି ଦେବୀମାନେ ନାରାୟଣ, ବ୍ରହ୍ମା, ମହେଶ୍ୱର ଆଦି ଦେବତାଙ୍କ ଶକ୍ତି । ମହାଶକ୍ତି ମଧ୍ୟରୁ ସେହି- ସବୁ ଶକ୍ତି ନିର୍ଗତ ହୋଇ ଏକ ଏକ ଦେବତାରୂପେ ସ୍ୱ କର୍ମ ସମ୍ପାଦନ କରୁ- ଥିଲେ । ମାତ୍ର ଯେତେବେଳେ ମହାଦେବୀଙ୍କର ଆବଶ୍ୟକ ହେଲା ସେତେବେଳେ ସେମାନେ ଶକ୍ତି ଭାବେ ଉପସ୍ଥିତ ହେଲେ, ମହାଶକ୍ତିଙ୍କୁ ସାହାଯ୍ୟ କରିବାକୁ । ଅସୀମ ସେମାନଙ୍କର ଶକ୍ତି । ଅଲୌକିକ ତାଙ୍କ କାହାଣୀ । ରଥ, ଗଜ, ଅଶ୍ୱ ସହିତ ଅସଂଖ୍ୟ ମଧ୍ୟ ସେ ଗର୍ଭସ୍ଥ କରି ଜୀର୍ଣ୍ଣ କରି ଦିଅନ୍ତି । ସେମାନଙ୍କ ଦେହ ବଜ୍ରସେହା । ଯୁଦ୍ଧ କ୍ଷେତ୍ରରେ କାହାର ମୁଣ୍ଡକୁ ପାଟି ଭିତରେ ପୁରାଇ ନାଚିଲା ବେଳେ ଚଣ୍ଡିକା ଛଟପଟ ହେଉଥାଏ ତ କାହାର ଗଣ୍ଡିଟିକୁ ଗିଳି ମୁଣ୍ଡଟି କାହାରକୁ କରିଥାନ୍ତି । କାହାକୁ ବା ମୋହନୀ ରୂପରେ 'ରତି' ଦେବା ଲାଗି ଭୁଲାଇ ନେଇ ବାଟରେ ମୁଣ୍ଡ ମୋଡ଼ି ଗିଳି ଦିଅନ୍ତି । ଏହିଭଳି ହିଁ ଯେଉଁ ରାକ୍ଷସମାନେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଜୟ କରୁଥିଲେ, ସେମାନଙ୍କୁ ଦେବୀଗଣ ଚୋବାଇ ଭକ୍ଷଣ କଲେ ।

କାଳ ବିକାଳଙ୍କ ମୁଖରୁ ସେମାନଙ୍କ ମୃତ୍ୟୁ ସମ୍ବାଦ ପାଇ ମହିଷାସୁର ପୁନଃ ପୁନଃ ବହୁ ସେନା ସେନାପତି ଯୁଦ୍ଧକୁ ପଠାଇ ଶେଷରେ ନିଜେ ଯୁଦ୍ଧ କ୍ଷେତ୍ରକୁ ବିଜେ କଲା । ପ୍ରଥମେ ତାର ଧାରଣା ଥିଲା, ଦେବୀଦୁର୍ଗାଙ୍କୁ ଯେ କୌଣସି ମତେ ପତ୍ନୀରୂପେ ସେ ପାଇବ । ମାତ୍ର ତାର ସୈନ୍ୟ ସେନାପତି ଯେତିକ ଯେମିତ ବଧ ହେବାରେ ଲାଗିଲେ ସେତିକ ସେତିକେ ତାର ସେ ଆଶା ମିଳାଇଗଲା ।

ଆସ୍ଥାନ ଉପରେ ରାକ୍ଷସରାଜ ବିଜେ କରିଛି । ଏତିକିବେଳେ କାଳ- ବିକାଳ ଉତ୍ତର ଜଣାଇଲେ, କାଳ ବିମୋଚନକୁ ଅଜ ସ୍ତ୍ରୀବୃନ୍ଦ କୌତୁକ

ଯୁଦ୍ଧରେ ବଧ କଲେ । ଶୁଣୁ ଶୁଣୁ ଏତେ ବଡ ବୀର ଦୁଃଖରେ ଅଧୀର ହୋଇ ମୂର୍ଚ୍ଛା ଗଲା । ଧୂମ୍ରଲୋଚନ ଚେତା କରାଇଲେ ପାଣି ସିଞ୍ଚି । ଚେତା ପାଇ ସ୍ତ୍ରୀଙ୍କ ପରି ଅନେକ ବିଳାପ କଲା । ଅତି କରୁଣ ସ୍ୱରରେ କହିଲା, ଆରେ ଶୁମ୍ଭ ନିଶୁମ୍ଭ—ଆରେ ଧୂମ୍ରଲୋଚନ, ତୁମେ ଏ ନଗର ଛାଡ଼ି ପଳାଅ । ଅନ୍ତତଃ ତୁମେ ତିନିଜଣ ବଞ୍ଚିଥିଲେ ରାକ୍ଷସକୁଳ ସମୟରେ ତିଷ୍ଠି ପାରିବ । ଏ ସମରରେ ରହିଲେ ସମସ୍ତେ ଗୋଟି ଗୋଟି ହୋଇ ମରିଯିବ । ଏଣୁ ମୁଁ ନିଜେ ଯୁଦ୍ଧ କ୍ଷେତ୍ରକୁ ଯିବ । ଯୁଗେ ଯୁଗେ ଦନୁଜ ନାରାୟଣଙ୍କର ଶତ୍ରୁ । ନାରାୟଣଙ୍କ ହସ୍ତରେ ବଧ ହୋଇଥିଲେ ବୈକୁଣ୍ଠ ଲାଭ କରିଥାନ୍ତି । ଯଦି ନାରାୟଣଙ୍କୁ ପରାସ୍ତ କରିଥାନ୍ତି; ତେବେ ମୋର ସୁନାମ ହୋଇଥାନ୍ତା । ଏବେ କିନ୍ତୁ କିଛି ହେବ ନାହିଁ । ସ୍ତ୍ରୀଟାକୁ ବଧ କରି କୌଣସି ପୌରୁଷ ନାହିଁ କିମ୍ବା ତା' ହାତରେ ବଧ ହେଲେ ଉଚ୍ଚଗତି ମିଳିବ ନାହିଁ ।

କଥା କହୁ କହୁ ମହିଷାସୁର କ୍ରୋଧରେ ଜର୍ଜରିତ ହୋଇ ପଡ଼ିଲା । ପାଗଳଙ୍କ ପରି ଏକ ଖଡ଼୍ଗ ଧାରଣ ପୂର୍ବକ ଧାଇଁ ଯାଇ ଧବଳ ପର୍ବତକୁ ଖଡ଼୍ଗ ଘାତରେ ଦ୍ୱିଖଣ୍ଡ କରିଦେଲା । ପୁଣି ସେହି ଖଡ଼୍ଗକୁ ଧରି ଧାଇଁଲା ଆକାଶକୁ । ସମସ୍ତ ଦେବତାଙ୍କୁ ସେ ଆଜି ବଧ କରିବ, ଫୋପାଡ଼ି ଦେବ ବ୍ରହ୍ମାର ମୁଣ୍ଡ ମୋଡ଼ି, କାଳାନ୍ତକ ଯମ ଭଳି ତାର ବିକଟାଳ ରୂପ ଦେଖି ଦେବଗଣ ଭୟରେ ପଳାୟନ କଲେ । କେଶବାସ ଅସମ୍ଭାଳ ହୋଇ ସମସ୍ତେ ପହଞ୍ଚିଲେ ଦୁର୍ଗାଙ୍କ ପାଖରେ । ଦେବତାଙ୍କ ଦୁଃଖ ଦେଖି ଉଗ୍ରତାରା ଶର-ଜାଳରେ ଆକାଶ ପଥ ରୁନ୍ଧି ଦେଲେ । ଦାନବ ମହିଷା ବାଟ ନପାଇ ମନ୍ତ୍ରୀ ଅନ୍ଧକକୁ ପଚାରିଲା, ବର୍ତ୍ତମାନ ଆଉ କଣ କରାଯିବ ? ଅନ୍ଧକ କହିଲା, ତୁ ତ ସବୁବେଳେ ସ୍ତ୍ରୀ ବୋଲି ତାଙ୍କୁ ହେୟଜ୍ଞାନ କରୁଛୁ । ହେଇ ଦେଖ ରତ୍ନଗିରି ଉପରେ ଶଙ୍ଖ, ଚକ୍ର ଧରି କପଟେ ସେ ଦେଖା ଦଜେ କରିଛି । ନିଜେ ନାରାୟଣ ସ୍ତ୍ରୀ ରୂପେ ଜନ୍ମ ହୋଇଛନ୍ତି ।

ସ୍ୱର୍ଗଯିବା ପଥ ଅବରୁଦ୍ଧ ଦେଖି ମହିଷା ମର୍ତ୍ତ୍ୟକୁ ପ୍ରତ୍ୟାଗମନ କଲା । ଆସୁ ଆସୁ ହୋଇଗଲା ରାତି । ବାଟରେ ପଡ଼ିଲା ରତ୍ନଗିରି । ପର୍ବତ ଉପରେ

ଚଉଷଠି ଯୋଗିନୀ, ନବକୋଟି କାତ୍ୟାୟନୀ, ଅସଂଖ୍ୟ ଯୋଦ୍ଧା ମୂରତ୍ତଙ୍କ ସହିତ ଦୁର୍ଗା ଯୁଦ୍ଧ କରନ୍ତି । ସମସ୍ତେ ମଦ୍ୟ ପାନରେ ମତୱାଲା । ଦେଖି ଦେଖି ମହିଷା କାୟା ବିସ୍ତାର କଲା । ତାର ବିରାଟ ସିଙ୍ଗରେ ରଣଭୂମିକୁ ଟଳମଳ କରିଦେଲା । ଭିଳମଣ୍ଡା ପରି ସେ ପର୍ବତକୁ ସିଙ୍ଗରେ ଧାରଣ କରି ଫୋପାଡ଼ି ଦେଲା ଦୂରକୁ । ଛିନ୍ନ ଭିନ୍ନ ହୋଇ ଦେବୀମାନେ ଏଣେ ତେଣେ ପଡ଼ିଗଲେ । ଏକା ମହାମାୟା ଦୁର୍ଗା ଶୂନ୍ୟରେ ଅବସ୍ଥାନ କରିଥାନ୍ତି ।

ରାତି ପାହି ଆସିଲା । ପାହାନ୍ତି ପ୍ରହରରେ ଧୂମ୍ରଲୋଚନ ମହିଷାକୁ କହିଲା, ଚାଲ ଏଠାରୁ ନବରକୁ ପଳାଇଯିବା । ଜୟ କଲା ସ୍ଥାନରେ ଆଉ କ୍ଷଣେ ରହିବା ଉଚିତ ନୁହେଁ । କାଲି ଆସି ଦେଖିବା କିଏ କେଉଁ ଆଡ଼େ ଗଲେ । ଧୂମ୍ରଲୋଚନର ସେ ଉପଦେଶ ମହିଷା ମନକୁ ଭଲ ଲାଗିଲା । ତାକୁ ପ୍ରଶଂସା କରି ନିଜ ନବରକୁ ବାହୁଡ଼ିଲା । ମନ ତାର ଆନନ୍ଦ, ସେ ଆଜି ତାର ପୌରୁଷ ଦେଖାଇଛି ।

ଦେବୀଦୁର୍ଗା ଏକା ଥାଆନ୍ତି ଶୂନ୍ୟରେ ଅନ୍ୟାନ୍ୟ ଦେବୀମାନେ ଏତେ ତେଣେ ବିଞ୍ଚି ହୋଇ ପଡ଼ିଥାନ୍ତି । ଦେବତାମାନେ ଦେବୀ ଦୁର୍ଗାଙ୍କର ଶୂନ୍ୟ ଗତି ଦେଖି ଖେଚରୀ ବିମାନ ଆଣିଦେଲେ । ସେ ବିମାନ ନିମିଷ ମାତ୍ରକେ ସପ୍ତଦ୍ୱୀପ ଭ୍ରମିପାରେ । ଘଡ଼ିକ ମଧ୍ୟରେ କୋଟି ବ୍ରହ୍ମାଣ୍ଡ ସେ ବୁଲି ପାରିବ, ନିଜେ ସ୍ୱୟଂ ବ୍ରହ୍ମା ମନ୍ତ୍ର ଉଚ୍ଚାରି ଦେବୀଙ୍କୁ ସେ ବିମାନ ଉପରେ ଅଭିଷିକ୍ତ କଲେ ।

ରାତି ପାହିଗଲା । ମହିଷାର ମନ ଆନନ୍ଦଥିଲେ ମଧ୍ୟ ଆଖିକୁ ନିଦ୍ରା ନାହିଁ । ଉଚ୍ଚାଟ ତାର ମନ । ମନେ ମନେ ସେ ଅନେକ ପ୍ରତିଜ୍ଞା କରୁଛି । କ୍ଷଣେ ଉଠେ, କ୍ଷଣେ ବସେ, କ୍ଷଣକରେ । କୋପ ଜର୍ଜରିତ ହୋଇ ପଦଚାରଣ କରେ । ସନ୍ତାପିତ ହୁଏ ସେ ନିଜର ଭୂଜକୁ ଚାହିଁ । ସେ ନିଜେ ଯଦି ଆଦ୍ୟରୁ ସଂଗ୍ରାମକୁ ଯାଇଥାନ୍ତା, ତେବେ ତାର ସେନାପତି ମରିଥାନ୍ତେ କାହିଁକି ? କର୍ମର ଅବଳେ ହତବୁଦ୍ଧି ହୋଇ ସେ ସଖାମାନଙ୍କୁ ମଗାଇଲା । ପ୍ରଥମରୁ ଯାଇଥିଲେ

ସେ ଶିବୁନ୍ଦ କରି ବା କରିଥାନ୍ତେ ତାର ? ଏହିଭଳି ଘନ ଘନ ଦେବାଳୟରେ ଶଙ୍ଖ ଧ୍ୱନି ଶୁଭିଲା । ସେ ଶରସନ୍ଧାନ କରି ଗଦାଧର ବାହାନ୍ତିକି ମାରିଲା । ତାପରେ ସ୍ଥାନ ଦେବାରିନ ସାରି ବ୍ରହ୍ମାଙ୍କୁ ସ୍ତୁତି କଲା ବନ୍ଧୁରୂପ ଧରି । ପୁଣି କାମରୂପୀ ସେ ଧାରଣ କଲା ଭୂଜଙ୍ଗ ମହିଷରୂପ । ସେ କାୟା ବିସ୍ତାର କରି ସାରା ପୃଥିବୀ ବ୍ୟାପି ଗଲା । କ୍ଷଣକ ମଧ୍ୟରେ ସେ ପ୍ରବେଶ କଲା ଦୁର୍ଗାଙ୍କ ସମୀପରେ । ଏଥି ମଧ୍ୟରେ ନାରାୟଣୀ, ବ୍ରହ୍ମାଣୀ ଆଦି ଦେବୀମାନେ ଦୁର୍ଗାଙ୍କ ସମୀପକୁ ଆସି ଯାଇଥାନ୍ତି । ମହିଷାସୁରର ଉତ୍କର୍ଷ ଦେବୀମାନେ ସହ୍ୟ କରି ପାରିଲେ ନାହିଁ । ଗଗନ ଉପେକ୍ଷା କରି ଧାଇଁଲେ ମହିଷା ନିକଟକୁ । ଦେବୀ ଦୁର୍ଗା ଉଚ୍ଚ ସ୍ୱରରେ କହିଲେ, "ତୁମେ ସବୁ ରହ ରହ—ମୁଁ ମହିଷାକୁ ମାରିବି ତାକୁ ବଧ କରିବା ନିମିତ୍ତ ଦେବତାଙ୍କୁ ମୁଁ ପ୍ରତିଶ୍ରୁତି ଦେଇଛି ।"

ସଙ୍ଗେ ସଙ୍ଗେ ମହିଷ ଭଳି ଦେବୀ ସିଂହ ରୂପ ଧାରଣ କରି କାୟା ବିସ୍ତାର କଲେ ନିମିଷକ ମଧ୍ୟରେ ଦୁହେଁ ଭେଟା ଭେଟି ହେଲେ । ସତେ ଯେପରି ମେରୁମନ୍ଦର ଦୁହେଁ ଭେଟ ହୋଇଛନ୍ତି । ଦୁହେଁ ସମର ଅଭ୍ୟାସୀ; ଜଣେ ମହାଶକ୍ତି—ଅନ୍ୟଟି ଶକ୍ତିଧର । ତାଙ୍କ ପଦାଘାତରେ ବ୍ରହ୍ମାଣ୍ଡ ଟଳମଳ ହେଲା । ଦୁହେଁ ଦୁହିଁଙ୍କର ଅଙ୍ଗ ନଖରେ ବିଦାରଣ କରନ୍ତି । ନଖର ପରି ଧାର ସର୍ବାଙ୍ଗରେ ବହିପଡେ । ଦୁହେଁ ବିସ୍ତାର କରନ୍ତି ତୁଣ୍ଡ ଏକ ଆରେକକୁ ଗିଳି ଦେବାକୁ । ସତେ ଯେପରି ସେ ତୁଣ୍ଡ ମଧ୍ୟରେ ଏ ତିନି ଭୁବନ ଗର୍ଭଗତ ହେବ । ଦେବୀଙ୍କ ଶରୀର ବଜ୍ରସେହ୍ନା ! ମୁର୍ଚ୍ଛନା ତାଙ୍କର ଲୌହ ଗିରିପରି । ଦୁହିଁଙ୍କର ନିଶ୍ୱାସ ଘାତରେ ଗିରିମାନ ପ୍ରକମ୍ପିତ ହେଉଛନ୍ତି । ଦୁହିଁଙ୍କ ଗର୍ଜନ ଶୁଭୁଥାଏ ମେଘ ଘଡ଼ଘଡ଼ି ଭଳି । ଦୁହିଁଙ୍କର ପ୍ରଚଣ୍ଡ ଖୁରଘାତରେ ପୃଥ୍ୱୀ ଚୂର୍ଣ୍ଣ ହୋଇ ଉଡ଼ିଲା ଭଳି ଲାଗୁଥାଏ । ପୃଥ୍ୱୀ କମ୍ପି ଯାଏ ଯେତେବେଳେ ଦୁହେଁ ଦୁହିଁଙ୍କ ମୁଣ୍ଡେ ମୁଣ୍ଡ ଲଢ଼ାଇ କରନ୍ତି । ଦୁହିଁଙ୍କ ସମରରେ ପବନ ସ୍ତବ୍ଧ ହୋଇଗଲା । ତଥାପି ଦୁଇ ସିଂହ ଲଢ଼ୁଥାନ୍ତି ପ୍ରବଳ ବିକ୍ରମରେ । ରକ୍ତସ୍ନାତ ଦୁହିଁ ରହିଥାନ୍ତି ସିଂହ ଦୁଇଜଣ । ମହାପ୍ରଳୟ ଆସନ୍ନ ଜାଣି ବ୍ରହ୍ମା ସ୍ତୁତି ଆରମ୍ଭିଲେ ଦେବୀ ଦୁର୍ଗାଙ୍କୁ ।

ହେଲା ସଂଗ୍ରାମ ଛାଡ଼ି ଦେବୀ ଶରୀରର ସମସ୍ତ ଶକ୍ତି ପୁଞ୍ଜୀଭୂତ କରି ସିଂହ-ରୂପୀ ମହିଷର ବକ୍ଷସ୍ଥଳେ ମାଡ଼ି ବସିଲେ । ନିଜର ନଖ ଦ୍ୱାରା ତାର ବୁକୁ ବିଦାରଣ କରିବାକୁ ଚେଷ୍ଟାକଲେ । ମାତ୍ର ଧାତାବରରେ ତାର ଦେହ ବଜ୍ରଠୁ କଠିନ । ଧାତାର ବରକୁ ତଥା ମହିଷାକୁ ଦେବୀ ପ୍ରଶଂସା କଲେ । ସେ କହିଲେ ମୋ ବାହନ ସିଂହ ପରି ତୁ ଦେଖା ଯାଉଛୁ—ଇଚ୍ଛା ହେଉନାହିଁ ତୋତେ ମାରିବାକୁ ନରୋପି ଗୁହିଁଲେ ତାକୁ ଦୁର୍ଗା । ବଡ଼ ଦୟା ଆସିଲା ତାଙ୍କ ଚିତ୍ତରେ । ସମରେ ନିଷ୍ଠୁରତା ପ୍ରଦର୍ଶନ କଲେ ମଧ୍ୟ ସନ୍ତାନ ପ୍ରତି ମା'ର କଣ ଚିତ୍ତରେ କୃପା ରହିବ ନାହିଁ ?

ଦେବୀ ସଦୟ ହୋଇ ଛାଡ଼ିଦେବାରୁ ସେ ପଳାଇଲା ନିଜର ମହିଷି ସ୍ୱରୂପ ଧରି ।

ନିଜ ପୁରରେ ପ୍ରବେଶମାତ୍ରେ ଅସ୍ୱସ୍ଥ ହୋଇ ପଡ଼ିଲା ମହିଷ । ହର୍ଯ୍ୟ ଚନ୍ଦ୍ରାବତୀ ଉଷ୍ମଜଳ ସିଞ୍ଚନ କରି ଚେତା କଲା । ଚନ୍ଦ୍ରାବତୀ ଉପଦେଶ ଦେଲା ଦୁର୍ଗାଙ୍କ ନିକଟରେ ଶରଣ ପଶିବାକୁ । ମହିଷ ଯୁଦ୍ଧର ବିବରଣୀ ବର୍ଣ୍ଣନା କରି ଦୁର୍ଗାଙ୍କ ଶକ୍ତି ବିଷୟ କହିବାକୁ ଲାଗିଲା । ଏଭଳି ଶକ୍ତି ସେ କାହାଠାରେ କେବେ ଦେଖିନାହିଁ । ମାତ୍ର ନାରୀ ହୋଇ ଶରଣ ପଶିବ କିପରି ? ଷନି ଦୁକୁଳକୁ ଅପଯଶ ହେବ । ଏତିକିବେଳେ ଶୂନ୍ୟ ଉପଶୂନ୍ୟ ନାମରେ ଦୁଇ କଟୁଆଳ ତା ନିକଟରେ ଉପସ୍ଥିତ ହେଲେ । ମହିଷାସୁର ସାନନ୍ଦ ହୋଇ ଦେବୀଙ୍କ ସହିତ ଯୁଦ୍ଧ କରିବାକୁ କହନ୍ତେ, ସେମାନେ ତତ୍‌କ୍ଷଣେ ଯୁଦ୍ଧକୁ ଗମନ କଲେ । ବାଜି ଉଠିଲା ବଜଘୋଷ ଢମକ ନିଶାଣ । ଗଗନ ମେଖଳେ ଅସୁରଙ୍କ ଥାଟ ଦେଖି ବେତାଳୀ, ଘୋରମୁଖୀଙ୍କୁ ଦୁର୍ଗା ଡକାଇଲେ । କହିଲେ ଅସୁର ସୈନ୍ୟ ନାଶ କରି, ଏଥର ମହିଷାସୁର ଆସିଛି କି ନାହିଁ । ଅଳ୍ପ ସମୟ ପରେ ଫେରି ଆସି ଦେବୀଙ୍କୁ କହିଲେ, ମହିଷାର ନିଜର କଟୁଆଳ ଶୂନ୍ୟ ଉପଶୂନ୍ୟ ଏଥର ଆସିଛନ୍ତି । ମହିଷା ଆସିନାହିଁ ।

ଦେବୀଦୁର୍ଗା କୁଠାରୀ, ଉଗ୍ରତାରା ଆଦି ପଞ୍ଚ ଭଗିନୀଙ୍କୁ ପଠାଇଲେ ତାଙ୍କୁ ବଧ କରିବାକୁ । ଦୁର୍ଗା ଅପେକ୍ଷା କରି ରହିଲେ ମହିଷାସୁରକୁ । ଶୂନ୍ୟ

ଉପଶୂନ୍ୟଙ୍କ ବଧପାଇଁ ଦେବୀମାନଙ୍କୁ ବେଶି ସମୟ ଲଗିଲ ନାହିଁ । ସୈନ୍ୟ ବଳଙ୍କୁ ଯୋଗିନୀଗଣ ଭୁଣ୍ଡ ବିସ୍ତାର କରି ଗର୍ଭସ୍ଥ କରିଦେଲେ । ଏ ସମ୍ବାଦ ରକ୍ଷରାଜ ମହିଷ ପାଇ ଧୂମ୍ରଲୋଚନଙ୍କୁ ସାରଥିକରି ଯୁଦ୍ଧକୁ ବିଜେ କଲା ।

କନ୍ୟାମାସ ଶୁକ୍ଳ ମହାଷ୍ଟମୀ । ସେଦିନ ଥାଏ ତିନଦଣ୍ଡ ମୂଳାନକ୍ଷତ୍ର । ମୂଳାରକ୍ଷ ପରେ ପୂର୍ବାଷାଢ଼ା ଆରମ୍ଭ । ଏ ଯୋଗରେ ମହିଷାସୁର ରଥଉପରେ ବିଜେ କଲା । ରଥ ବାହି ନେଇ ଦୁର୍ଗାଙ୍କ ସମୀପରେ ପହଞ୍ଚାଇବା ପାଇଁ ସାରଥିଙ୍କୁ ତିନଦଣ୍ଡ ସମୟ ଲଗିଲ । ମହିଷାସୁରର ଯୁଦ୍ଧାଗମନ ସମ୍ବାଦ ନାରାୟଣୀଙ୍କ ଠାରୁ ଦୁର୍ଗା ଶୁଣିଲେ । ଖେଚରୀ ବିମାନ ଆରୋହଣ କରି ଦେବୀ-ଦୁର୍ଗା ବିଜେ କଲେ । ମହିଷା ବିଜେ କରିଛି ସୂର୍ଯ୍ୟକେତୁ ବିମାନ । ଦୁହେଁ ଦେଖା ଦେଖି ହେଲେ ପୁନର୍ବାର । ସୃଷ୍ଟି ଓ ସ୍ରଷ୍ଟା, ଉଭୟଙ୍କର ଭେଟ । ଦୁହେଁ ସମର ନିପୁଣ । ମହିଷର ଶରକୁ ଦେବୀ ଦୁର୍ଗା ପ୍ରତିଶର କରି ମହିଷ ଉପରକୁ ଶରମାନ ପ୍ରହାର କଲେ । ମହିଷା ସେ ଶରମାନ ଛେଦୁଣୁ ସାରଥି ଧୂମ୍ରଲୋଚନ ତାହ ନିବାରଣ କଲା । ଦେବୀ ଦେଖିଲେ ଧୂମ୍ରଲୋଚନଙ୍କୁ ବଧ ନ କଲେ ମହିଷଙ୍କୁ ବଧକରି ହେବନାହିଁ । ସେ ଉତ୍ପନ୍ନ କଲେ ନିଜ ଦେହରୁ ଲମ୍ବିଡ଼ାଯ୍ନୀ ଓ ଭୂଆଶୁଣି ନାମ୍ନୀ ଦୁଇ ଦେବୀଙ୍କୁ । ଦେବୀ ଦୁର୍ଗାଙ୍କ ଆଦେଶରେ ସେ ଦୁଇ ଦେବୀ ଧାଇଁ ଯାଇ ସୂର୍ଯ୍ୟକେତୁ ରଥ ଏବଂ ଧୂମ୍ରଲୋଚନଙ୍କୁ ଗିଳି ଦେଲେ ।

ଭୟ ପାଇ ମହିଷାସୁର ଅନ୍ତର୍ଦ୍ଧାନ ହୋଇଗଲା । ଦୁର୍ଗା ଦିବ୍ୟ ଦୃଷ୍ଟିରେ ତାକୁ ଶୂନ୍ୟରେ ଦୃଷ୍ଟି ହେଲେ । ଖେଚରୀ ବିମାନ ତ୍ୟାଗକରି ସିଂହ ଆରୋହଣ ପୂର୍ବକ ଦେବୀ ଧାଇଁଲେ ମହିଷାସୁର ନିକଟକୁ । ମହା ଶୂନ୍ୟରେ ଲଗିଲ ଦୁଇ-ଜଣଙ୍କର ମହାଯୁଦ୍ଧ । ଦେବୀ ଶସ୍ତ୍ର ମାରି ତା ହାତରୁ ଅସ୍ତ୍ର ଶୂନ୍ୟ କରିଦେଲେ । ଅସ୍ତ୍ର ଶୂନ୍ୟ ହୋଇ ରାକ୍ଷସ ଏକ ବିରାଟ ମହିଷ ଶରୀର ଧାରଣ କଲା । ତାର ଖୁରା ଘାତରେ ବିଶ୍ୱ ଥରହର ! ଆଶ୍ଚର୍ଯ୍ୟ ହେଲେ ଦେବୀ ମହାଶ୍ରୀମା । ନିଜ ଦେହରୁ ବହୁ ଭୁଜ ନିର୍ଗତ କରି ସେ ଶର ପରେ ଶର ପ୍ରହାର କଲେ ମହିଷା-

ସୁରଙ୍କୁ ମାଧ ମହିଷ ଦେହରେ ଶରମାନ ବାଜ ଉପୁଡ଼ ପଡ଼େ । ଦେବୀ ଶର ବନ୍ଧ ବେନ୍ଧ ବରକ୍ତ ହୋଇଗଲେ । ନାଗପାଶ ଦେବୀ ବାନ୍ଧଲେ । ମହିଷ ତାର ଫିଙ୍ଗ ଘାତରେ ନବାରଣ କଲା । ଦେବୀ ମାରିଲେ ସୁଦର୍ଶନ ଚକ୍ର; ମାତ୍ର ତାହା ବନ୍ଦ ହୋଇଗଲା ମହିଷ ଦେହରେ ଚଢ଼ ।

କୋପେ ଦୁର୍ଗା ନେହାକାର ଗଦା ପ୍ରହାର କଲେ । ମାଧ ମହିଷାର କଛୁ ହେଲାନାହିଁ । ପୁଣି ପ୍ରହାର କଲେ ମହାମୁଦ୍ଗର ପରିଘ । ମହିଷା ଶୃଙ୍ଗରେ ପଡ଼ ତାହା ବ୍ୟର୍ଥ ହୋଇଗଲା । ଶସ୍ତ୍ରମାନ ବ୍ୟର୍ଥ ହେବା ଦେଖି ଦେବୀ ପରଶୁ କୁଠାର ଧରି ମହିଷ କାନ୍ଧରେ ପ୍ରହାର କଲେ । ଛିଡ଼ିଗଲା ବେଣ୍ଡିଠାରୁ ମୁଣ୍ଡ । ସଙ୍ଗେ ସଙ୍ଗେ ସେ ବେଣ୍ଡି ମଧ୍ୟରୁ ମହିଷ ନିଜ ରୂପ ଧରି ଆବିର୍ଭୂତ ହେଲା । ଦେବୀ ବିଶ୍ୱରୂପ ଧାରଣ କଲେ । ଏକ ଶୂଳ ରାକ୍ଷସ ବକ୍ଷ ଦେଶରେ ବିଦ୍ଧ କରି, ମହିଷ ପୃଷ୍ଠ ଦେଶରେ ବାମ ପାଦ ଦେଇ ବକ୍ଷସ୍ଥଳରେ ଥୋଇ ମାଡ଼ ବସିଲେ ଆସୁରୀ ଶକ୍ତିକୁ । ଶୂଳ ବିଦ୍ଧ ହୋଇଛି ମହିଷ ବକ୍ଷ ଦେଶରେ । ତଥାପି ମହା ପରାକ୍ରମୀ ରାକ୍ଷସ ବଣ, ଗିରି କନ୍ଦର ମାଡ଼ି ଗୃଳାଛି ଦେବୀ; ଦୁର୍ଗା ଶୂଳ ଧାରଣ କରି ଗୃଳିଛନ୍ତି ତା ସହିତ । ଜୀବନ ବିକଳେ ସେ ଧାଇଁ ଗୃଲିଛି । ଦେବୀ ଡାକ ଦେଲେ, "ଅଲେ କାଳକା, ବାସେଳ ଚୁଦ୍ରା ନାରସୁଣୀ"—ତତ୍କ୍ଷଣାତ୍ ନବକୋଟି କାତ୍ୟାୟନୀ, ଛପନ କୋଟି ପିଶାଚୀ, ଚଉଷଠୀ ଯୋଗିନୀ, ନବକୋଟି ଶୋଣେହା, ବି ଅର୍ବୁଦ ଚଣ୍ଡୀ, ଚଉଦକୋଟି ଡାକଣୀ, ଛପନ କୋଟି ଗୃମୁଣ୍ଡୀ ଧାଇଁ ଅସି ମାଡ ବସିଲେ ରାକ୍ଷସକୁ । ମାଧ ମହିଷାକୁ ସ୍ଥିର କରିବା କାହାରି ଦ୍ୱାରା ସମ୍ଭବ ହେଲ ନାହିଁ । କୋପରେ ଦେହ ଝାଡ଼ିଦେଲା ମହିଷା । ସିହୀ ଭୂ ହୋଇ ଦେବୀମାନେ ଏଣେତେଣେ ପଡ଼ିଗଲେ । ଜମ୍ବୁଦ୍ୱୀପ, କୁଶଦ୍ୱୀପ, କ୍ରୌଞ୍ଚଦ୍ୱୀପ, ସିଂହଳ ଦ୍ୱୀପ, ପାରଦ୍ୱୀପ, ଶାକଳ୍ପଦ୍ୱୀପ ଆଦିରେ ପଡ଼ିଲେ ଦେବୀମାନେ । ଗ୍ରାମ, ପର୍ବତ ବନରେ ପଡ଼ି ଦେବୀମାନେ ଉଠି ପାରିଲେ ନାହିଁ ।

ଦୁର୍ଗାଦେବୀ ଡାକେଶ୍ୱରୀଙ୍କୁ ଡ଼ାକ ଆଜ୍ଞା ଦେଲେ, ବଡ଼ ପାଟିରେ ଡ଼ାକ ସମସ୍ତଙ୍କୁ କୁହ ଯେ ଯେଉଁଠି ସିଝାଡ଼ ହୋଇ ପଡ଼ିଲେ ସେଠାରେ ସେ ସିଦ୍ଧରୂପେ

ପୂଜା ପାଆନ୍ତି । କାଷ୍ଠ, ପାଷାଣ, ମୃତ୍ତିକା ରୂପେ ସେମାନେ ଅବସ୍ଥାନ କରନ୍ତି ।
ତାଙ୍କର ବାକ୍ୟ ସିଦ୍ଧ ହେଉ । ଦୁର୍ଗାଙ୍କ ବଚନରେ ଉତ୍କେଶ୍ୱରୀ ଡାକିଦେଲେ,
"ହେ ଦେବୀମାନେ, ତୁମ୍ଭମାନଙ୍କର ଚରଣାବ ସ୍ପର୍ଶ କଲି, ତେଣୁ ତୁମେ
ଯେଉଁଠି ଯେ ପଡ଼ିଲ ଜଗତ ଜନନୀଙ୍କ ଆଜ୍ଞା ପ୍ରମାଣେ ସେଠାରେ ତୁମେ
ପୂଜା ପାଅ ।"

ମହାଦେବୀ ଦୁର୍ଗା ତ୍ରିଶୂଳକୁ ମାଡ଼ି ବସିଛନ୍ତି ଅସୁର ବକ୍ଷଦେଶରେ ।
ପାଗଳଙ୍କ ପରି ମହିଷା ଘୂରିବୁଲୁଛି ଚତୁର୍ଦ୍ଦିଗ । ସ୍ଥଳଭାଗରେ ସେ ରହି
ପାରିଲା ନାହିଁ । କ୍ଷୀର ସମୁଦ୍ର ମଧ୍ୟରେ ସେ ଜଳଶାୟୀ ହେଲା । ଦୁର୍ଗାଙ୍କୁ
ସମୁଦ୍ରମଧ୍ୟରେ ବୁଡ଼ାଇ ମାରିବା ପାଇଁ ମନସ୍ଥ କରି ବୁଡ଼ିଗଲା ଅଗାଧ
ଜଳରେ । ତା ସହିତ ଦୁର୍ଗା ମଧ୍ୟ ତ୍ରିଶୂଳ ଧରି ବୁଡ଼ିଗଲେ । ଲକ୍ଷେତାଳ
ଜଳରେ ବୁଡ଼ି ଦୁର୍ଗା ଚିନ୍ତା କଲେ, ଏହାକୁ ବଧ କରିବା ସମ୍ଭବ ହୋଇ
ପାରୁନାହିଁ । ଛାଡ଼ିଦେଲେ ଏ ବ୍ରହ୍ମାଦି ଦେବଗଣଙ୍କୁ ପରାଭବ ଦେବ । ତାକୁ
ଛାଡ଼ିଦେବା ବିଷୟରେ ଭାବୁଛନ୍ତି । ଏତିକିବେଳେ ତାଙ୍କଠାରୁ ସର୍ବମଙ୍ଗଳା
ଜନ୍ମହେଲେ । ସେ ଜଳଫାସ ଲଗାଇ ଟାଣି ଆଣିଲେ ମହିଷାକୁ । ଭୀଷଣ
ଗର୍ଜନ କରୁଥାଏ ମହିଷା । ଦୁର୍ଗାଙ୍କ ପାଖରେ ଆଉ କେହି ନାହାନ୍ତି କେବଳ
ସର୍ବମଙ୍ଗଳାଙ୍କ ବ୍ୟତୀତ । ଦୁର୍ଗା ସର୍ବମଙ୍ଗଳାଙ୍କ ଅତିକୁ ଅନାଇଲେ ।

ସର୍ବମଙ୍ଗଳା କହିଲେ, ରାକ୍ଷସ ଏହିଭଳି ମରିବ ନାହିଁ । ଅଶୀସହସ୍ର
ବରଷ ଯେ ବ୍ରହ୍ମାଙ୍କୁ ତପସ୍ୟା କରି ବର ପାଇଛି ପୁରୁଷ ହସ୍ତରେ ମରିବ
ନାହିଁ—ଯଦି ସ୍ତ୍ରୀ ହାତରେ ଯେ ମରିବ ତେବେ ତା ର ଜାନୁ ଯୌବନ ଦେଖୁ-
ଥିବ । ତେଣୁ ତୁ ଉଲଗ୍ନ ନ ହେଲେ ସେ ବଧ ହେବ ନାହିଁ । ବିସ୍ମିତ ହେଲେ
ଦେବୀ ଦୁର୍ଗା ତାର କଥା ଶୁଣି । ମାନ ସେ ଉଲଗ୍ନ ହେବେ କପରି ? ଅସୁର-
ମାନେ ଚତୁର୍ଦ୍ଦିଗରେ ଅଛନ୍ତି । ସେମାନଙ୍କ ବର୍ତ୍ତମାନରେ ଉଲଗ୍ନ ହେବା
ସମ୍ଭବ ନୁହେଁ । ଜାଣିଶୁଣି ଅନ୍ୟାୟ ସେ କରିବେ କପରି ? ସର୍ବମଙ୍ଗଳା କହିଲେ
"ତୁ ଦେବତାଙ୍କୁ କହିଛୁ, ମହିଷାକୁ ବଧ କରିବୁ ବୋଲି । ଯାହା ହେଉ

ତୋତେ ତାହା ପାଳନ କରିବାକୁ ପଡ଼ିବ । ଏତିକି ବେଳେ ଶୂନ୍ୟରୁ ଦେବତାମାନେ ଡାକି ଦେଲେ, ମହାକାଳ ରକ୍ଷାକର । ସର୍ବମଙ୍ଗଳା କହିଲେ, ମହତଙ୍କ ବଚନ ଅନ୍ୟଥା ହୁଏ ନାହିଁ । ସୂର୍ଯ୍ୟ ପଶ୍ଚିମରେ ଉଦୟ ହେଲେ କିମ୍ବା ସିନ୍ଧୁ ଦକ୍ଷିଣ ଛାଡ଼ି ଉତ୍ତରକୁ ମାଡ଼ିଗଲେ ଓ ପର୍ବତରେ ପଦ୍ମ ଫୁଟିଲେ ମହତଙ୍କ ବାଣୀ କେବେ ଅନ୍ୟଥା ହୁଏ ନାହିଁ । ତେଣୁ ମହିଷାର ବଧ ପାଇଁ ତୋତେ ସବୁ କିଛି କରିବାକୁ ପଡ଼ିବ ।

ମହାଦେବୀ, ମଙ୍ଗଳଙ୍କ କଥା ଶୁଣି ଚାମୁଣ୍ଡାରୂପ ଧାରଣ କଲେ । ବିବସନ ହୋଇ କାନ୍ଥଟା ମାଇଲେ । ଦୃଶ୍ୟ ହେଲ ସ୍ତନ ଯୌବନ । ମାଙ୍କର ଏ ଭୟଙ୍କର ରୂପ ଦେଖି ଦେବତାମାନେ ମହାତ୍ରାସ ପାଇଲେ । ତଟସ୍ଥ ହେଲ ମହିଷା । ସେ ଭାବିଲା ମନେ ମନେ, "ଏ ପ୍ରତ୍ୟକ୍ଷରେ ମହାମାୟୀ ଦୁର୍ଗତି-ତାରିଣୀ ମୋତେ ସଂଗ୍ରାମରେ ବଧ କରି ନପାରି ସେହି ରୂପକୁ ଧାରଣ କଲେ । ମୃତ୍ୟୁକୁ ମୁଁ ଯଦି ଇଚ୍ଛା ନ କରିବ, ତେବେ ଏ ଶେଷ ସମୟରେ ଆଉ କ'ଣ ରକ୍ଷା ପାଇ ପାରିବ ? ଯୁଗ ଯୁଗ ଏହି ସ୍ତନ ଯୌବନ ମୋର ଧ୍ୟେୟ । ଧାତା ଠାରୁ ଯାହା ମୁଁ ଲୁହିଁଥିଲି ତାହା ମୁଁ ଏ ମହାମାୟୀଙ୍କ ଠାରୁ ପାଇଲି ।"

ନିଶ୍ଚେଷ୍ଟ ହୋଇ ରହିଁରହିଲା ମହିଷା । ସେ ଦେଖିଲା ସେହି ତା'ର ଆଦି ଜନ୍ମସ୍ଥାନ ଆଉ ଯାହାଖାଇ ଜୀବନ ଧାରଣ କରିଥିଲା । ସମାପ୍ତ ହେଲା ତା'ର କର୍ମ । ମୃତ୍ୟୁ ତା ପଛରେ ଧାଇଁ ଧାଇଁ ଯେତେବେଳେ ବ୍ୟସ୍ତ ହୋଇଛନ୍ତି ସେତେବେଳେ ସେ ମୃତ୍ୟୁ ହାତରେ ଧରା ଦେଇଛି । ପୃଷ୍ଠ ଦେଶରେ ମାଉ ସେହି ଅମୃତ ଚରଣ ତାକୁ ସେହି ସମ୍ପଦ ଦାନ କରିଛି । ବାଙ୍ଗିଥିଲା 'ମା'ର ସେହି ଉନ୍ମୁକ୍ତ ସ୍ତନ । ଯେଉଁ ସ୍ତନ୍ୟ ପାନ ପାଇଁ ଯୁଗ ଯୁଗ ଧରି ଯୋଗୀ ଯୋଗା-ରୂଢ଼, ଆଜି ସବୁ ତା'ପାଇଁ ଉନ୍ମୁକ୍ତ । ଉନ୍ମୁକ୍ତ ତା ପାଇଁ ତାର ଜନ୍ମଭୂମି । ଆଉ ଏ ମୂଢ଼ ଜୀବର କ'ଣ ଆବଶ୍ୟକ ? ଯାହା କେହି କେବେ ପାଇ ନାହିଁ

... ତା ପାଇଛୁ । ଶିଷ୍ଟ ପଣରେ ନୁହେଁ ଦୁଷ୍ଟ ପଣରେ । ସେ ଯେଉଁ ଭାବରେ ଯାତନା ଜାଣିଛି, ସେଥ ତା'ର ସେଇଟି । ଜୀବନର ଏହି ମହାର୍ଘ ଦର୍ଶନରେ ...ତ୍ତ ଯାଇ ମନୀଷା ବୃଦ୍ଧି ହେଲା, ମହାଶକ୍ତିଙ୍କର ଅନେକ ସାମାନ୍ୟ ଜାନୁ ସେ...ବନକୁ । ତା'ର ଆତ୍ମଶକ୍ତି ମିଳାଇ ଯାଇ ଲୀନ ହେଲା, ସେହି ବିଜୟିନୀ ମହାଶକ୍ତିଙ୍କ ଅନ୍ତରରେ !!!



